# ଆଦର୍ଶ ପୁରୁଷ


**କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ ( ଏମ୍.ଏ.)**

ପ୍ରକାଶକ: ଶିକ୍ଷାସନ୍ଧାନ, ଏନ୍.ଡ଼ି - ୭,ଭି.ଆଇ.ପି. ଏରିଆ,
ଆଇ.ଆର୍.ସି. ଭିଲେଜ, ଭୁବନେଶ୍ୱର, ପିନ୍ - ୭୫୧୦୧୫
ଦୂରଭାଷ : ୦୬୭୪-୨୫୫୬୧୦୯
ଫାକ୍ସ : ୦୬୭୪-୨୫୫୦୬୫୬
sikshasandhan@gmail.com
www.sikshasandhan.org.in

ଦ୍ୱିତୀୟ ସଂସ୍କରଣ: ୨୦୧୬

ପ୍ରଚ୍ଛଦ: ଜଗବନ୍ଧୁ ଦାଶ

ମୂଲ୍ୟ : ୬୦/- ଟଙ୍କା ମାତ୍ର


## ADARSHA PURUSA


Author : Krushnachandra Sengupta (M.A)

Published by : Sikshya Sandhan, N.D - 7,
VIP area, IRC, Village, BBSR
Ph. : 0674- 2556109, Fax : 0674-550656
sikshasandhan@gmail.com
www.sikshasandhan.org.in

Second Edition : 2016

Cover design : Jagabandhu Dash

Price : Rs.60/-



ସାଧୁ ପ୍ୟାରୀମୋହନ ସେନ
(୧୮୩୯-୧୯୦୦)

# ପ୍ରକାଶକୀୟ

ଶିକ୍ଷାସନ୍ଧାନ ତରଫରୁ ପ୍ୟାରୀମୋହନ ସେନଙ୍କର ଜୀବନୀ 'ଆଦର୍ଶପୁରୁଷ' ପୁନଃ ପ୍ରକାଶନ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଏହି ଜୀବନୀର ରଚୟିତା ବିଶିଷ୍ଟ ଶିକ୍ଷାବିତ ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ ।

ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାରେ ଶିକ୍ଷାର ଯେଉଁ ପ୍ରସାର ଘଟିଥିଲା ସେଥିରେ କୃତବିଦ୍ୟ ଶିକ୍ଷକମାନଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ମାତ୍ର ଏହି ଶିକ୍ଷାପ୍ରସାରରେ ତତ୍‌କାଳୀନ ଶିକ୍ଷା ନିରୀକ୍ଷକ ମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଶିକ୍ଷକଭାବେ କର୍ମମୟ ଜୀବନ ଆରମ୍ଭ କରି ପରବର୍ତ୍ତୀ ସମୟରେ ସେମାନଙ୍କ ଶିକ୍ଷା ନିରୀକ୍ଷକଭାବେ ଶିକ୍ଷା, ଶିକ୍ଷକ ଓ ଶିକ୍ଷାନୁଷ୍ଠାନ ଗୁଡ଼ିକୁ ନୂତନ ଦିଗ୍‌ଦର୍ଶନ ଦେଇପାରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଯୁଗପୁରୁଷ ରାଧାନାଥ ରାୟ, ପଲ୍ଲୀକବି ନନ୍ଦକିଶୋର ବଳ, ଭକ୍ତକବି ମଧୁସୂଦନ ରାଓ, ଡଃ ମାୟାଧର ମାନସିଂହଙ୍କ ଭଳି ଅନେକ । ମାତ୍ର ଏହି ଶିକ୍ଷା ନିରୀକ୍ଷକ ମାନଙ୍କର ଅବଦାନ ସଂପର୍କରେ ବିଶେଷ ଆଲୋଚନା ହୋଇଥିବାର ମନେ ହୁଏନାହିଁ । ଏହି ପୃଷ୍ଠଭୂମିରେ ପ୍ୟାରୀମୋହନ ସେନ୍‌ଙ୍କ ଭଳି ଜଣେ ଶିକ୍ଷାପ୍ରେମୀ, ନିଷ୍ଠାପର ଶିକ୍ଷା ନିରୀକ୍ଷକଙ୍କ ଜୀବନୀ ପ୍ରକାଶନ ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ । ଏହା ଶିକ୍ଷକ, ଶିକ୍ଷାବିତ୍, ଶିକ୍ଷା-ଐତିହାସିକ ଓ ସାଧାରଣ ପାଠକଙ୍କ ଦ୍ୱାରା ଆଦୃତ ହେବବୋଲି ଆଶା । ଏହି ପୁସ୍ତକର ଲେଖକ, ପ୍ରକାଶକଓ ସ୍ୱତ୍ତ୍ୱାଧିକାରୀଙ୍କ ନିକଟରେ ଶିକ୍ଷାସଂଧାନ କୃତଜ୍ଞ ।

ପ୍ରଫେସର ଯତୀନ୍ଦ୍ର କୁମାର ନାୟକ
ସଭାପତି
ଶିକ୍ଷାସନ୍ଧାନ, ଭୁବନେଶ୍ୱର

# ମୁଖବଂଧ

୨୦୧୩ ମସିହା । *ନିଶାନ* ପତ୍ରିକାର **ଶରତ ସଂଖ୍ୟାରେ ଓଡ଼ିଶାରେ** ଏଯାବତ୍ ପ୍ରକାଶିତ ବିଶିଷ୍ଟ ବ୍ୟକ୍ତିମାନଙ୍କ ଜୀବନୀକୁ ନେଇ ଏକ ସଂକଳନ ପ୍ରକାଶ କରାଯିବାର ସ୍ଥିରହେଲା । ଉଦ୍ଦେଶ୍ୟଥିଲା ଯେ ଏହି ଜୀବନ-ଚରିତ ଗୁଡିକ ମଧ୍ୟରେ ଓଡ଼ିଆ ପାଠକ ବିଶେଷକରି ତରୁଣ ପିଢ଼ିର ପାଠକମାନେ ଓଡ଼ିଶାର ରାଜନୀତି, ସାହିତ୍ୟ, ଅର୍ଥନୀତି, ସମାଜବ୍ୟସ୍ଥା, ସଂସ୍କୃତି, କଳା, ସମ୍ବାଦପତ୍ର ଓ ପତ୍ରପତ୍ରିକା ସଂମ୍ପାଦନା, ସମାଜସଂସ୍କାର, ସ୍ୱାଧୀନତା ସଂଗ୍ରାମ ଆଦି କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ଓଡ଼ିଆ ପ୍ରାଜ୍ଞ ପୁରୁଷ ମାନଙ୍କର ତ୍ୟାଗ, ଅଙ୍ଗୀକାର ଓ ସୃଜନଶୀଳତାର ପରିଚୟ ପାଇବେ । ବିଂଶ ଶତାବ୍ଦୀଥିଲା ଚରିତ-ସାହିତ୍ୟ ରଚନାର ସୁବର୍ଣ୍ଣଯୁଗ । ଏହି ସମୟରେ ପ୍ରକାଶ ପାଇଥିଲା ବହୁ ଓଡ଼ିଆ ମନୀଷୀମାନଙ୍କ ଜୀବନ ଚରିତ । ସେମାନଙ୍କ ମଧ୍ୟରେ ଥିଲେ ଗୌରୀଶଙ୍କର ରାୟ, ମଧୁସୂଦନ ଦାସ, ଫକୀର ମୋହନ ସେନାପତି, ରାଧାନାଥ ରାୟ, ଗଂଗାଧର ମେହେର, ମୟାଧର ମାନସିଂହ, କୁନ୍ତଳା କୁମାରୀ ସାବତ, ବିଶ୍ୱନାଥ ମିଶ୍ର, ଗୋପାଳ ଚନ୍ଦ୍ର ପ୍ରହରାଜ, ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ, ମାଳତୀ ଚୌଧୁରୀ ଓ ଅନ୍ୟମାନେ ।

ପରବର୍ତ୍ତୀ ସମୟରେ ଏଭଳି ପ୍ରାୟ ୩୦ଟି ଜୀବନୀରୁ ଉଦ୍ଧୃତାଂଶ ନିଆଯାଇ *ଚରିତ-ଚାରଣ* ଶୀର୍ଷକରେ ଏକ ପୁସ୍ତକ ପ୍ରକାଶ ପାଇଥିଲା । ସେ ସବୁ ଆମ ଇତିହାସର ବହୁ ଅନାଲୋଚିତ ଦିଗ ଉନ୍ମୁକ୍ତ କରିବାରେ ଯେ ସହାୟକ ହୋଇଥିଲେ ଏ କଥା ନିର୍ବିବାଦରେ କୁହାଯାଇପାରେ । ଏହି ପୁସ୍ତକ ପ୍ରକାଶ କରିବା ସମୟରେ ବନ୍ଧୁ ଗବେଷକ ଶ୍ରୀ ସୁଧୀର କୁମାର ବେହୁରା ପ୍ୟାରୀମୋହନ ସେନ (୧୮୩୯-୧୯୦୦)ଙ୍କ ଏକ ଦୁଷ୍ପ୍ରାପ୍ୟ ଜୀବନୀ *(ଆର୍ଦଶ ପୁରୁଷ)* ସଂଗ୍ରହ କରି ମୋତେ ଦେଇଥିଲେ । ଏହି ଜୀବନୀ ପୁସ୍ତକର ରଚୟିତା ଥିଲେ ଶ୍ରୀ କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ । କବିବର ରାଧାନାଥ ରାୟ ଓଡ଼ିଶାର ଇନ୍‌ସ୍ପେକ୍ଟର ଅଫ୍ ସ୍କୁଲ୍ସ ଥିବା ସମୟରେ ଶ୍ରୀ ପ୍ୟାରୀ ମୋହନ ସେନ ଡେପୁଟୀ ଇନ୍‌ସ୍ପେକ୍ଟର ଅଫ୍ ସ୍କୁଲ୍ସ ଭାବେ କାର୍ଯ୍ୟ କରୁଥିଲେ । ଖ୍ରୀ ୧୮୮୧ରୁ ୧୮୯୮ଯାଏ ସେ କଟକ ଜିଲ୍ଲାରେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ । ସେ କଟକ ଜିଲ୍ଲା ମାହାଙ୍ଗା ଅନ୍ତର୍ଗତ ରଘୁନାଥନଗର ଗ୍ରାମରେ ଜନ୍ମ

ଗ୍ରହଣ କରିଥିଲେ । ଶ୍ରୀ ଶ୍ରୀ ବିନୋଦ ବିହାରୀ ମନ୍ଦିର ନିକଟବର୍ତ୍ତୀ ତାଙ୍କ ଜନ୍ମସ୍ଥାନର ନାମ ଥିଲା ନାୟକ ସାହି ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାର ସମାଜ, ଶିକ୍ଷା, ସଂସ୍କୃତି ନ୍ୟାୟ ବ୍ୟବସ୍ଥା, ସ୍ୱାସ୍ଥ୍ୟ ଏସବୁର ଅନ୍ତରଂଗ ଚିତ୍ର ମିଳେ *ଆଦର୍ଶ ପୁରୁଷରୁ* । ପୁଣି ଉତ୍କଳକୁ ବଙ୍ଗୀୟ ବୈଦ୍ୟମାନଙ୍କ ଆଗମନ ଓ ଅବସ୍ଥାନ ସମ୍ପର୍କରେ ଏହା ଏକ ଉପାଦେୟ ପ୍ରାମାଣିକ ଗ୍ରନ୍ଥ । ଉତ୍କଳରେ ଗୌଡ଼ିୟ ବୈଷ୍ଣବଧର୍ମର ପ୍ରଚାର, ପ୍ରସାର ଓ ଲୋକପ୍ରିୟତା ବିଷୟରେ ବହୁ ତଥ୍ୟ ରହିଛି ଏଥିରେ । ପୁଣି ଏଥିରେ ରହିଛି ଫକୀରମୋହନ, ରାଧାନାଥ, ରେଭେନ୍‌ଶା ସାହେବଙ୍କ ଭଳି ଅନେକ ଲୋକଙ୍କ ସଂପର୍କରେ ସୂଚନା । ଓଡ଼ିଶାରେ *ଉତ୍କଳ ଦୀପିକାର* ପ୍ରଭାବ ସମ୍ପର୍କରେ ଏଥିରେ ତଥ୍ୟନିଷ୍ଠ ସୂଚନା ରହିଛି । ସେ ସମୟର ଇଂରାଜୀ ଶିକ୍ଷା, ପ୍ରାଥମିକି ଓ ମାଧମିକ ଶିକ୍ଷା ବ୍ୟବସ୍ଥା ଓ ଶିକ୍ଷା ପ୍ରସାରରେ ସରକାର ଓ ସାଧାରଣ ବ୍ୟକ୍ତିବିଶେଷଙ୍କ ଭୂମିକା ଆଦିର ବିଶଦ ଆଲୋଚନା ଏଥିରେ କରାଯାଇଛି । ସେହିଭଳି ସେ ସମୟରେ ଶିକ୍ଷା, ଶିକ୍ଷକ, ଶିକ୍ଷାୟତନ ସମ୍ପର୍କରେ ଏଥିରେ ଅନେକ ମୂଲ୍ୟବାନ୍ ତଥ୍ୟ ରହିଛି । । ଊନବିଂଶ ଶତାବ୍ଦୀର ଶେଷ ପାଦରେ କ୍ରମ ପରିବର୍ତ୍ତିତ ଗ୍ରାମ୍ୟ ଅର୍ଥନୀତି, ସମାଜବ୍ୟବସ୍ଥା, ଶିକ୍ଷା, ସହରୀକରଣର ଆଦ୍ୟାବସ୍ଥା ଓ ଉପନିବେଶିକ ଶାସନବ୍ୟବସ୍ଥାର ବହୁ ଅନ୍ତରଙ୍ଗ ଆଲେଖ୍ୟରେ ଏଇ ଜୀବନୀଟି ଭରପୂର । ଏହି ଦୃଷ୍ଟିରୁ *ଆଦର୍ଶ ପୁରୁଷ* କେବଳ ଏକ ଜୀବନୀ ନୁହେଁ ବରଂ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଦସ୍ତାବିଜ୍ ।

ଏହି ଦୁଷ୍ପ୍ରାପ୍ୟ ଜୀବନୀଟିକୁ ସଂଗ୍ରହକରି ମୋତେ ଦେଇଥିବାରୁ ମୁଁ ବନ୍ଧୁ ଓ ଗବେଷକ ସୁଧୀର କୁମାର ବେହୁରାଙ୍କ ନିକଟରେ କୃତଜ୍ଞ । ସାଧାରଣ ପାଠକଙ୍କପାଇଁ ଉପଲବ୍ଧ ନଥିବାରୁ ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ପୁସ୍ତକର ପୁନଃପ୍ରକାଶନ ଆମର ଏକ ସାମାଜିକ ଦାୟିତ୍ୱ । ଏହି ପୁସ୍ତକଟିକୁ ପ୍ରକାଶ କରିବା ପାଇଁ ସମସ୍ତ ପ୍ରକାର ସହଯୋଗ ଓ ପ୍ରେରଣା ଦେଇଥିବାରୁ ବିଶିଷ୍ଟ ସାହିତ୍ୟିକ ଓ ଉତ୍କଳ ସାହିତ୍ୟ ସମାଜର ସଭାପତି ବନ୍ଧୁ ବିଜୟାନନ୍ଦ ସିଂହଙ୍କ ନିକଟରେ ଆମେ କୃତଜ୍ଞ । ପୁସ୍ତକଟି ପ୍ରକାଶ କରିଥିବାରୁ ଶିକ୍ଷା ସନ୍ଧାନ ଆମ ସମସ୍ତଙ୍କର ଧନ୍ୟବାଦର ପାତ୍ର ।

**ସଂଗ୍ରାମ ଜେନା**

# ସୂଚୀପତ୍ର


| | | |
|---|---|---|
| ୧. | ପ୍ରଥମ ପରିଚ୍ଛେଦ<br>**ବୈଦ୍ୟଜାତିର ଉତ୍କଳକୁ ଆଗମନ** | ୯ |
| ୨. | ଦ୍ୱିତୀୟ ପରିଚ୍ଛେଦ<br>**ପ୍ୟାରୀମୋହନଙ୍କ ଜନ୍ମଭୂମି** | ୧୨ |
| ୩. | ତୃତୀୟ ପରିଚ୍ଛେଦ<br>**ପିତାମାତା** | ୧୭ |
| ୪. | ଚତୁର୍ଥ ପରିଚ୍ଛେଦ<br>**ଜନାର୍ଦ୍ଦନଙ୍କ ସନ୍ତାନ ସନ୍ତତି** | ୨୧ |
| ୫. | ପଞ୍ଚମ ପରିଚ୍ଛେଦ<br>**ପ୍ୟାରୀମୋହନଙ୍କ ବାଲ୍ୟକାଳ ଓ ଶିକ୍ଷା** | ୨୨ |
| ୬. | ଷଷ୍ଠ ପରିଚ୍ଛେଦ<br>**ଯୌବନ ଓ କର୍ମକ୍ଷେତ୍ର** | ୨୫ |
| ୭. | ସପ୍ତମ ପରିଚ୍ଛେଦ<br>**ଗୃହସ୍ଥ ପ୍ୟାରୀମୋହନ** | ୩୫ |
| ୮. | ଅଷ୍ଟମ ପରିଚ୍ଛେଦ<br>**କର୍ମରୁ ଅବସରଗ୍ରହଣ ଓ ମୃତ୍ୟୁ** | ୪୦ |
| ୯. | ନବମ ପରିଚ୍ଛେଦ<br>**ପ୍ୟାରୀମୋହନଙ୍କ ଚରିତ୍ର** | ୪୪ |
| ୧୦. | **ପରିଶିଷ୍ଟ** | ୫୭ |


●

# ପ୍ରଥମ ପରିଚ୍ଛେଦ

## ବୈଦ୍ୟଜାତିର ଉତ୍କଳକୁ ଆଗମନ

ବଙ୍ଗଦେଶର ସ୍ୱନାମଧନ୍ୟ ରାଜା ବଲ୍ଲାଲସେନ ଓ ଲକ୍ଷ୍ମଣସେନଙ୍କ ବଂଶଧର ବୈଦ୍ୟ-ବ୍ରାହ୍ମଣମାନେ ବହୁକାଳ ପୂର୍ବେ ଉତ୍କଳକୁ ଆଗମନ କରିଥିଲେ । କେଉଁ ସମୟରେ ସେମାନେ ପ୍ରଥମେ ଏଠାରେ ଉପନିବେଶ ସ୍ଥାପନ କରିଥିଲେ, ତାହା ବର୍ତ୍ତମାନ ସ୍ଥିର କରିବା ସହଜ ନୁହେଁ । ସେଥିପାଇଁ ଆମ୍ଭମାନଙ୍କୁ ଉତ୍କଳ ଇତିବୃତ୍ତ ଏବଂ ଅନ୍ୟାନ୍ୟ ଉପାୟର ସହାୟତା ଗ୍ରହଣ କରିବାକୁ ହେବ ।

ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ତାହାଙ୍କ 'ଓଡିଶାର ଇତିହାସ'ରେ 'ବଙ୍ଗାଳିଙ୍କର ଉପନିବେଶ ସ୍ଥାପନ' ପର୍ଯ୍ୟାୟରେ ଲେଖିଅଛନ୍ତି:-- "ବର୍ତ୍ତମାନ (୧୮୭୫ ଖ୍ରୀଷ୍ଟାବ୍ଦରେ) ଓଡିଶାରେ ଉପନିବେଶୀ ବଙ୍ଗାଳୀଙ୍କ ସଂଖ୍ୟା ନିତାନ୍ତ ଅଳ୍ପ ନୁହେଁ ; ପ୍ରାୟ ଲକ୍ଷାଧିକ ହେବ । ଗଙ୍ଗବଂଶୀୟ ରାଜାଙ୍କ ସମୟରେ ( ୧୩୩୨ ଖ୍ରୀଷ୍ଟାବ୍ଦରୁ) ଓଡିଶାକୁ ସେମାନଙ୍କର ଆଗମନର ସୂତ୍ରପାତ ହୋଇଥିଲା । ସ୍ୱୟଂ ବଙ୍ଗଳାର ଶେଷ ସ୍ୱାଧୀନ ନରପତି ୧୨୦୩ ମସିହାରେ ଓଡିଶାକୁ ପଳାଇ ଆସିଥିଲେ । ତଦନନ୍ତର ଶ୍ରୀଚୈତନ୍ୟ ଅନେକ ବଙ୍ଗାଳି ବୈଷ୍ଣବଙ୍କୁ ସଙ୍ଗେ ଘେନି ଷଷ୍ଠଦଶ ଶତାବ୍ଦୀରେ ଓଡିଶାକୁ ଆସିଥିଲେ । ପୁରୀର ଜଗନ୍ନାଥ ଦେବ ମଧ୍ୟ ଅନେକ ବଙ୍ଗାଳିଙ୍କି ଓଡିଶାକୁ ଆସିବାକୁ ପ୍ରଲୁବ୍ଧ କରାଇଥିଲେ । ଏହି ବଙ୍ଗାଳିଙ୍କ ମଧ୍ୟରୁ ଅନେକ ରହିଯାଇ ଓଡିଶାରେ ବାସ କଲେ ।" ପ୍ୟାରୀ ବାବୁ ତାହାଙ୍କ ଇତିହାସରେ ଅନ୍ୟତ୍ର ଲେଖିଅଛନ୍ତି ଯେ

ରାଜରାଜେଶ୍ୱରଙ୍କ ରାଜତ୍ୱ କାଳରେ (୧୨୦୦ ଖ୍ରୀଷ୍ଟାବ୍ଦରେ ) ବଙ୍ଗ ଦେଶର ସେନ ବଂଶୀୟ ଶେଷ ହିନ୍ଦୁରାଜା ଲକ୍ଷ୍ମଣେୟ ମୁସଲମାନମାନଙ୍କର ଆକ୍ରମଣ ଭୟରେ ପଳାଇ ଆସି ଜଗନ୍ନାଥ ମନ୍ଦିରରେ ଆଶ୍ରୟ ଗ୍ରହଣ କରି ଜୀବନର ଅବଶିଷ୍ଟ କାଳ ସେଠାରେ କଟାଇ ଥିଲେ । ଭଦ୍ରଖ ଏକ ପ୍ରକାର ଓଡିଶାର ଉପନିବେଶୀ ବୈଦ୍ୟଙ୍କର ଆଦି ସ୍ଥାନ ଥିବା ପ୍ରତ୍ୟକ୍ଷେ ଉକ୍ତ ଅନୁମାନ ସମ୍ଭବପର ବୋଲି ବୋଧ ହୁଏ ।

ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥ ତାହାଙ୍କ ଲିଖିତ 'କର୍ମଯୋଗୀ ଗୌରୀଶଙ୍କର' ରେ ବଙ୍ଗାଳିମାନଙ୍କ ଏ ଦେଶକୁ ଆସିବାର ବିଭିନ୍ନ କାରଣ ମଧ୍ୟରେ ଉପର୍ଯ୍ୟୁକ୍ତ କାରଣମାନଙ୍କ ବ୍ୟତୀତ ଆହୁରି ଗୋଟିଏ କାରଣ ଉଲ୍ଲେଖ କରିଅଛନ୍ତି । "ଉକ୍ତ ଶତାବ୍ଦୀରେ (ଷୋଡଶ ଶତାବ୍ଦୀରେ) ଓଡ଼ିଶା ମୋଗଲ ଅଧିକାରକୁ ଆସିବାରୁ ବଙ୍ଗର ଶାସନକର୍ତ୍ତା ତୋଡର ମଲ୍ଲଙ୍କ କର୍ତ୍ତୃତ୍ୱରେ ଯେତେବେଳେ ଓଡିଶାର ପ୍ରଥମ ରାଜସ୍ୱ ବନ୍ଦୋବସ୍ତ ହେଲା, ସେତେବେଳେ ବଙ୍ଗ ଦେଶରୁ ଅନେକ କର୍ମଚାରୀ ଏ ଦେଶକୁ ରାଜକାର୍ଯ୍ୟରେ ଆସିଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକ ବସତି ସ୍ଥାପନ କରିଅଛନ୍ତି ।" ମୃତ୍ୟୁଞ୍ଜୟ ବାବୁଙ୍କ ମତରେ ଗୌଡେଶ୍ୱର ଗଜପତିମାନଙ୍କ ରାଜତ୍ୱ ସମୟରେ ବଙ୍ଗାଳିମାନଙ୍କ ଏ ଦେଶକୁ ଆସିବାର ସୂତ୍ରପାତ ହୋଇଛି ସତ୍ୟ, କିନ୍ତୁ ଶୋଡଶ ଶତାବ୍ଦୀରୁ ଏମାନଙ୍କର ଉତ୍କଳରେ ଉପନିବେଶ ସ୍ଥାପନର ଉପକ୍ରମ ହୋଇଅଛି ।

ଉପର୍ଯ୍ୟୁକ୍ତ ଇତିହାସ ଓ ସାହିତ୍ୟବେତ୍ତାମାନଙ୍କ ଲିଖିତ ବିବରଣରୁ ଏବଂ ପ୍ୟାରୀମୋହନଙ୍କ ଗ୍ରାମର ଇତିହାସରୁ ଆମ୍ଭେମାନେ ଗୋଟାଏ ସିଦ୍ଧାନ୍ତରେ ଉପନୀତ ହୋଇଅଛୁଁ । ତାହା ଏହି ,-- ବୈଦ୍ୟ ବ୍ରାହ୍ମଣମାନେ ବଙ୍ଗଦେଶର ଶେଷରାଜା ଲକ୍ଷ୍ମଣ ସେନଙ୍କ ସହିତ ୧୨୦୩ ଖ୍ରୀଷ୍ଟାବ୍ଦରେ ଓଡିଶାକୁ ଆସି ପ୍ରଥମତଃ ତାହାଙ୍କ ସହିତ ଭଦ୍ରଖରେ ବାସ କରିଥିଲେ । ପୁଣି କୌଣସି କାରଣ ବଶତଃ ତନ୍ମଧ୍ୟରୁ ଅନେକେ ଷୋଡଶ ଶତାବ୍ଦୀରେ ସାଲେପୁର ଥାନାନ୍ତର୍ଗତ ମାହାଙ୍ଗା ବା ମହାଗ୍ରାମ ନାମକ ଗ୍ରାମରେ ବାସ କଲେ । କିୟତ୍ କାଳ ପରେ ଏମାନେ ମହାଙ୍ଗା ଛାଡି ତାହାର ଅନ୍ତଃପାତୀ ରଘୁନାଥ ନଗର ନାମକ ଗ୍ରାମରେ ବାସ କଲେ । ଅଦ୍ୟାବଧି ଭଦ୍ରଖରେ କେତେକ ବୈଦ୍ୟ ପରିବାର ବାସ କରୁଅଛନ୍ତି; କିନ୍ତୁ ସେମାନଙ୍କ ସଂଖ୍ୟା ଦିନକୁ ଦିନ ହ୍ରାସ ପାଇବାରେ ଲାଗୁଅଛି । ମହାଙ୍ଗାରେ ଯେ ବୈଦ୍ୟମାନେ ଏକ ସମୟରେ ବାସ କରୁଥିଲେ, ତାହାର ନିଦର୍ଶନ ସ୍ୱରୂପ ସେଠାରେ 'ବୈଦ୍ୟପଡ଼ା'

ନାମରେ ଗୋଟାଏ ସ୍ଥାନ ଅଛି । ବର୍ତ୍ତମାନ ସେଠାରେ ଆଉ ବୈଦ୍ୟମାନେ ନାହାନ୍ତି । ସେଠାରେ ବଙ୍ଗୀୟ ବ୍ରାହ୍ମଣ ଓ କାୟସ୍ଥମାନେ ବାସ କରୁଅଛନ୍ତି ।

ଆମ୍ଭେମାନେ କହୁଅଛୁ ଯେ, ୧ ୨ ୦ ୩ ଖ୍ରୀଷ୍ଟାବ୍ଦରୁ ବୈଦ୍ୟମାନେ ଭଦ୍ରଖଠାରେ ବାସ କରି ଷୋଡ଼ଶ ଶତାବ୍ଦୀରେ ରଘୁନାଥ ନଗରକୁ ଆସିଅଛନ୍ତି ଏ କଥା କହିବାର କାରଣ ଏହି ଯେ ପ୍ରୋକ୍ତଗ୍ରାମର ଇଷ୍ଟଦେବ ଶ୍ରୀ ଶ୍ରୀ ବିନୋଦବିହାରିଙ୍କୁ ପ୍ରାୟ ଚାରିଶତ ବର୍ଷ ପୂର୍ବେ ବୈଦ୍ୟବ୍ରାହ୍ମଣମାନେ ଉକ୍ତ ଗ୍ରାମରେ ପ୍ରତିଷ୍ଠିତ କରିଥିବାର ପ୍ରମାଣ ମିଳେ ।

ବୋଲିବା ବାହୁଲ୍ୟ ଯେ ଉକ୍ତ ରଘୁନାଥ ନଗର ଗ୍ରାମ ଆମ୍ଭମାନଙ୍କ ସ୍ୱର୍ଗୀୟ ପ୍ୟାରୀମୋହନଙ୍କ ଜନ୍ମଭୂମି ।

●

# ଦ୍ୱିତୀୟ ପରିଚ୍ଛେଦ

## ପ୍ୟାରୀମୋହନଙ୍କ ଜନ୍ମଭୂମି

କଟକ ଜିଲ୍ଲାର ଅନ୍ତଃବର୍ତ୍ତୀ ସାଲେପୁର ଥାନା ଉତ୍କଳରେ ସୁବିଦିତ । ଏହି ଥାନାର ଅଧୀନସ୍ଥ ଗ୍ରାମମାନଙ୍କରେ ସ୍ୱନାମଧନ୍ୟ ମଧୁସୂଦନ ଦାସ ପ୍ରମୁଖ ବହୁ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଜନ୍ମ । ଉକ୍ତ ଥାନାରେ ରଘୁନାଥ ନଗର ନାମରେ ଖଣ୍ଡିଏ ଗ୍ରାମ ଅଛି । ଏହି ଗ୍ରାମ ସାଲେପୁର ଥାନାଠାରୁ ୯ ମାଇଲ ଉତ୍ତର ଏବଂ କଟକ ସହରଠାରୁ ପ୍ରାୟ ୨୪ ମାଇଲ ଉତ୍ତରପୂର୍ବରେ ଅବସ୍ଥିତ । କି ସୂତ୍ରରେ ଶତ ଶତ ବର୍ଷ ପୂର୍ବେ ବୈଦ୍ୟବ୍ରାହ୍ମଣ ତଥା ବ୍ରାହ୍ମଣ ଓ କାୟସ୍ଥମାନେ କଟକ ସହରଠାରୁ ଏ ଭଳି ଦୂରବର୍ତ୍ତୀ ଗ୍ରାମରେ ବାସ କରିବାକୁ ଇଚ୍ଛୁକ ହୋଇଥିଲେ, ତାହା ଆଜି ଆମ୍ଭମାନଙ୍କର ଜାଣିବାର ଉପାୟ ନାହିଁ । କଥିତ ଅଛି ଯେ, ରଘୁନାଥ ସେନ ନାମକ ଜନୈକ ବୈଦ୍ୟବ୍ରାହ୍ମଣ ସନ୍ତାନ ଏହି ଗ୍ରାମର ପ୍ରତିଷ୍ଠାତା ଥିବାରୁ ଗ୍ରାମର ନାମ ରଘୁନାଥ ନଗର । ଏହା ମାହାଙ୍ଗା ପୋଷ୍ଟା ଅଫିସ୍‌ର ଅନ୍ତର୍ଗତ ।

ଏହି ଗ୍ରାମ ଓ ମାହଙ୍ଗା ମଧ୍ୟରେ ଖଣ୍ଡିଏ ଦୀର୍ଘିକା ଅଛି । ଏହାର ଚତୁର୍ଦ୍ଦିଗରେ ଉତ୍କଳୀୟ ବ୍ରାହ୍ମଣ, କରଣ ଓ କୃଷକମାନଙ୍କ ବସତି । ଶାସ୍ତ୍ରରେ ଅଛି "ଧନିକଃ ଶ୍ରୋତ୍ରିୟୋ ରାଜା ନଦୀ ବଦୈସ୍ତୁ ପଞ୍ଚମଃ । ଏତେ ଯନ୍ତ୍ର ନ ବିଦ୍ୟନ୍ତେ ତତ୍ର ବାସଂ ନ କାରୟେତ୍ ।" ପୂର୍ବେ ଏ ଗ୍ରାମେ ଧନୀ ବ୍ୟକ୍ତିଙ୍କ ଅଭାବ ନ ଥିଲା । ଅଧୁନା ଧନ ଉତ୍କଳୀୟ କୃଷକମାନଙ୍କ ହସ୍ତଗତ । ପୂର୍ବେ ଏହି ଗ୍ରାମର ବୈଦ୍ୟବ୍ରାହ୍ମଣମାନେ ଶ୍ରୋତ୍ରିୟ ଥିଲେ କି ନାହିଁ, କହିବା ଦୁଷ୍କର; କିନ୍ତୁ ସେମାନେ ଧର୍ମ ପରାୟଣ ଥିଲେ ଏବଂ ତାହାର ପ୍ରମାଣ ଅତଃପର ପ୍ରଦତ୍ତ ହେଉଅଛି । ଉତ୍କଳରେ ଯେତେବେଳେ

ଯେଉଁମାନେ ରାଜତ୍ୱ କରିଅଛନ୍ତି, ସେହିମାନେ ଯେ ସେତେବେଳେ ଏହାର ରାଜା, ସେ କଥା କହିବା ବାହୁଲ୍ୟ ମାତ୍ର । ଏ ଗ୍ରାମ କଦାପି ନଦୀର ଅଭାବ ବୋଧ କରି ନାହିଁ; କାରଣ ଅଧୁନା ବର୍ତ୍ତମାନ 'ଝରିଆ ନଦୀ' ପୂର୍ବେ ଗୋବରୀ ନଦୀ ସହ ସଂପୃକ୍ତ ଥିଲା । ବୋଧହୁଏ ତେଣୁ ଏହାର ନଦୀ ନାମ ଏପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଅଛି; କିନ୍ତୁ ବହୁକାଳ ହେଲା ଗୋବରୀ ସହିତ ଏହାର ସଂପର୍କ ରହିତ ହୋଇଥିବାରୁ ଏହା ଜୋର ରୂପେ ଆଜି ବିଦ୍ୟମାନ । ସ୍ରୋତହୀନ ହେବାରୁ ଏହାର ଦୀର୍ଘ କଳେବର କ୍ରମଶଃ ହ୍ରାସ ଲଭୁ ଅଛି ଏବଂ ଗର୍ଭ ପଙ୍କିଳ ହେଉଅଛି । ପୁଣି ଏହାର ଜମିଦାରମାନେ ମତ୍ସ୍ୟଲାଭ ଆଶାରେ ଏହାକୁ ସଂକୀର୍ଣ୍ଣରୁ ସଂକୀର୍ଣ୍ଣତର କରୁଅଛନ୍ତି; ତେଣୁ ଏଥିରୁ ବହୁ ମତ୍ସ୍ୟପ୍ରାପ୍ତି ହେଉଥିଲେ ମଧ ଏହାର ଜଳ ବର୍ତ୍ତମାନ ଦୂଷିତ ହୋଇଅଛି ଓ ଏହା ମେଲେରିଆ ପୋଷକ ହୋଇଅଛି । ଅବଶିଷ୍ଟ ରହିଲା ବୈଦ୍ୟ । ବୈଦ୍ୟବ୍ରାହ୍ମଣ ସନ୍ତାନମାନଙ୍କ ବାସସ୍ଥଳୀ ଯେ ବହୁକାଳ ଯାବତ୍ ବୈଦ୍ୟର ଅଭାବ ଅନୁଭବ କରିନାହିଁ- ଏହା କହିବା ଅତ୍ୟୁକ୍ତି ମାତ୍ର । ପୁଣି ଏହି ଗ୍ରାମର ଚତୁର୍ଦ୍ଦିଗରେ କର୍ମକାର, କୁମ୍ଭକାର, ସୂତ୍ରଧର, ରଜକ, ନାପିତ, ଗୁଡ଼ିଆ, ତେଲି ପ୍ରଭୃତି ବାସ କରି ଗ୍ରାମବାସୀମାନଙ୍କର ନାନାବିଧ ଅଭାବ ମୋଚନ କରୁଅଛନ୍ତି । ପାଣ, ହାଡ଼ି, କଣ୍ଡରା ଓ ବାଉରୀମାନେ ମଧ ଏହି ଗ୍ରାମବାସୀମାନଙ୍କ ସେବାରେ କାଳହରଣ କରୁଅଛନ୍ତି ।

ଏ ଗ୍ରାମର ଅତୀତ ବିବରଣ ଆନନ୍ଦପ୍ରଦ । ବହୁକାଳରୁ ଏଠାରେ ଶୈବ, ଶାକ୍ତ ଓ ବୈଷ୍ଣବମାନଙ୍କ ବାସ । ସୁତରାଂ ଏଠାରେ ଶିବ, ଦୁର୍ଗା ତଥା ବିନୋଦବିହାରୀଙ୍କ ମନ୍ଦିର ବର୍ତ୍ତମାନ ରହିଅଛି । ଗ୍ରାମର ଅଧିକାଂଶ ଅଧିବାସୀ ଯେ ବିନୋଦବିହାରୀ-ଗତ ପ୍ରାଣ ଏକଥା ଅସ୍ୱୀକାର କରିବାର ଉପାୟ ନାହିଁ । ପୂର୍ବକାଳରୁ ଶିବଙ୍କ ଜାଗର, ଦୁର୍ଗା ଏବଂ ବାସନ୍ତୀଙ୍କ ମୂର୍ତ୍ତିପୂଜା ଏବଂ ବିନୋଦବିହାରୀଙ୍କ ଦୋଳ ଚନ୍ଦନ ପ୍ରଭୃତି ଯାତ୍ରାମାନ ମହାସମାରୋହ ସହିତ ପ୍ରତିବର୍ଷ ଅନୁଷ୍ଠିତ ହୋଇ ଆସୁଅଛି; ଶିବଙ୍କ ପୂଜାରେ ଜନୈକ ଉତ୍କଳ ବ୍ରାହ୍ମଣ ନିଯୁକ୍ତ- ଗ୍ରାମବାସୀମାନେ ତାହାଙ୍କ ପୂଜାରେ ସେତେ ଆଗ୍ରହବାନ ନୁହନ୍ତି । ଦୁର୍ଗା ଓ ବିନୋଦବିହାରୀଙ୍କ ପୂଜାରେ ସେହି ଗ୍ରାମ ଏବଂ ମହାଗ୍ରାମବାସୀ ବଙ୍ଗୀୟ ବ୍ରାହ୍ମଣମାନେ ନିଯୁକ୍ତ । ଗ୍ରାମବାସୀ ବୈଦ୍ୟବ୍ରାହ୍ମଣମାନେ ବାତ୍ସରିକ ଦୁର୍ଗାପୂଜାରେ ଯେପରି ଯୋଗଦାନ କରନ୍ତି, ତାହାଙ୍କ ଦୈନିକ ପୂଜାରେ ସେପରି କରନ୍ତି ନାହିଁ । ଗ୍ରାମର ବ୍ରାହ୍ମଣମାନେ ସେଥିରେ ବେଶୀ ଆସ୍ଥାପର; କିନ୍ତୁ ବିନୋଦବିହାରୀଙ୍କ ଦୈନନ୍ଦିନ ତଥା ବାର୍ଷିକ ପୂଜା, ଏବଂ ମହୋତ୍ସବରେ

ବୈଦ୍ୟସନ୍ତାନମାନେ ପ୍ରାଣ ଢାଳି ଦେଇଥାନ୍ତି । ସୁତରାଂ ନିଃସନ୍ଦେହରେ ବୋଲାଯାଇପାରେ ଯେ, ବିନୋଦବିହାରୀ ଏହି ଗ୍ରାମର ଇଷ୍ଟ ଦେବତା ।

ଗ୍ରାମର ଗୋଟିଏ ସେବକ ପରିବାର ହସ୍ତରେ ଶ୍ରୀ ଶ୍ରୀ ବିନୋଦବିହାରୀଙ୍କ ସେବାପୂଜା ତତ୍ତ୍ୱାବଧାନର ଭାର ନ୍ୟସ୍ତ । ତଥାପି ସେ ସର୍ବସାଧାରଣଙ୍କ ପ୍ରେମାସ୍ପଦ । ଏହି ଗ୍ରାମର ଭକ୍ତମାନଙ୍କ ମଧ୍ୟରୁ କେହି ତାହାଙ୍କ ମନ୍ଦିର ନିର୍ମାଣ କରିଅଛନ୍ତି , କେହି ଜମି ବାଡ଼ି ଖଞ୍ଜି ଦେଇ ଅଛନ୍ତି, କେହି ସୁବର୍ଣ୍ଣାଳଙ୍କାର ଦାନ କରି ଅଛନ୍ତି, କେହି ବା କାୟିକ ଓ ଆର୍ଥିକ ଭାବରେ ସେବା କରି ଆପଣାକୁ ଧନ୍ୟ କରିଅଛନ୍ତି । ବିନୋଦବିହାରୀଙ୍କ ସେବାପୂଜାରେ ଯେପରି ନିଷ୍ଠା ଦେଖାଯାଏ, ତାହା ଏକା ନୀଳାଚଳର ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ବ୍ୟତୀତ ଅନ୍ୟତ୍ର ବିରଳ । ଏହାଙ୍କ ପ୍ରାତଃକାଳୀନ ଓ ସାନ୍ଧ୍ୟ ଆରତି ଦର୍ଶନ କରିବା ନିମିତ୍ତ ଗ୍ରାମବାସୀ ନରନାରୀଙ୍କ ଉତ୍କଣ୍ଠା ବାସ୍ତବରେ ଅନୁକରଣୀୟ । ଦୁଃଖ-ଶୋକପୂର୍ଣ୍ଣ ଜୀବନ ଘେନି ଏହି ଗ୍ରାମବାସୀ ଥରେ ବିନୋଦବିହାରୀଙ୍କ ମୁଖମଣ୍ଡଳକୁ ଚାହିଁ ଅସହ୍ୟ ଶାରୀରିକ ଓ ମାନସିକ ଯନ୍ତ୍ରଣା ମଧ୍ୟ ବିସ୍ମୃତ ହୋଇଅଛନ୍ତି । ମୁଗୁନି ପ୍ରସ୍ତରରେ ନିର୍ମିତ ଏହି ବିନୋଦବିହାରୀଙ୍କ ମୂର୍ତ୍ତିର ଠାଣି ଅନନ୍ୟସାଧାରଣ । ଭାରତ ଭ୍ରମଣକାରୀ ସାଧୁମାନେ ଏକ ବାକ୍ୟରେ ସ୍ୱୀକାର କରି ଅଛନ୍ତି ଯେ ଏ ଭଳି ମୂର୍ତ୍ତି ଭାରତରେ ଅନ୍ୟତ୍ର ଦେଖାଯାନ୍ତି ନାହିଁ । ଆମ୍ଭେମାନେ ମଧ୍ୟ ବୃନ୍ଦାବନ ମଥୁରା, ବାରଣାସୀ ନବଦ୍ୱୀପ ପ୍ରଭୃତି ସ୍ଥାନମାନ ଦର୍ଶନ କରିବା ପରେ ଆଜି ପ୍ରୋକ୍ତ ଭକ୍ତିର ଯାଥାର୍ଥ ଅନୁଭବ କରୁଅଛୁଁ । ପିତଳରେ ନିର୍ମିତ ଶ୍ରୀମତୀ ରାଧା, ଲଳିତା ଓ ବିଶାଖାଙ୍କ ମୂର୍ତ୍ତି ମଧ୍ୟବିନୋଦବିହାରୀଙ୍କ ମୂର୍ତ୍ତିର ଅନୁରୂପ । ପୁଣି ଦୋଳଯାତ୍ରା ସମୟରେ ଏହି ମୂର୍ତ୍ତିଗୁଡ଼ିକ ଯେଉଁ ବିମାନରେ ଅଧିଷ୍ଠିତ ହୁଅନ୍ତି, ତାହା ଏକା ମହାଗ୍ରାମ ବ୍ୟତୀତ ଉତ୍କଳର ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ଦୋଳଯାତ୍ରା ସମୟରେ ଏହି ମୂର୍ତ୍ତିମାନଙ୍କର ସୌନ୍ଦର୍ଯ୍ୟ ଥରେ ଯାହାଙ୍କ ନେତ୍ରାତିଥି ହୋଇଅଛି, ସେ ସହଜରେ ତାହା ବିସ୍ମୃତ ହୋଇପାରିବେ ନାହିଁ । ଆମ୍ଭେମାନେ ସେଥିପାଇଁ ବନ୍ଧୁବାନ୍ଧବମାନଙ୍କୁ ପ୍ରଭୁଙ୍କ ଦୋଳଯାତ୍ରା ଦର୍ଶନ କରିବାକୁ ଅନୁରୋଧ କରିଥାଉଁ ।

ପୂର୍ବେ ଏହି ଗ୍ରାମ ଡେପୁଟି ମାଜିଷ୍ଟ୍ରେଟ, ଜମିଦାର, ସ୍କୁଲ ଡେପୁଟି ଇନସ୍‌ପେକ୍ଟର, ପୁଲିସ୍ ଇନସ୍‌ପେକ୍ଟର, କିଲେଟରୀ ଶିରସ୍ତାଦାର ପ୍ରଭୃତିଙ୍କୁ ଜନ୍ମ ଦେଉଥିଲା ।

ଏମାନେ ଯେ ଯେଉଁଠାରେ ଥାଆନ୍ତୁ ପଛକେ, ଦୋଳ ଏବଂ ଦଶହରା ସମୟରେ ଗ୍ରାମକୁ ଆସି ଗ୍ରାମର ଶୋଭାବର୍ଦ୍ଧନ ସଙ୍ଗେ ସଙ୍ଗେ ସକଳ ପ୍ରକାରେ ଅଭାବ ମୋଚନ କରୁଥିଲେ । ଜରିଆ ନଦୀର ଜଳ ଉତ୍ତମ ଥିଲା, ବାୟୁ ବିଶୁଦ୍ଧ ଥିଲା ; ତେଣୁ ଦେଶାନ୍ତରରେ ଅସୁସ୍ଥ ହୋଇ ଲୋକେ ସୁସ୍ଥ, ହେବା ପାଇଁ ଏହି ଗ୍ରାମକୁ ଫେରି ଆସୁଥିଲେ । ଖାଦ୍ୟପେୟର ପ୍ରାଚୁର୍ଯ୍ୟ ଥିଲା; କାରଣ ଶସ୍ତାଦରରେ ଉତ୍କୃଷ୍ଟ ତଣ୍ଡୁଳ, ଦୁଗ୍ଧ, ଦଧି, ଘୃତ, ଲବଣୀ ପ୍ରଭୃତି ଯଥେଷ୍ଟ ମିଳୁଥିଲା । ଗ୍ରାମବାସୀମାନେ ଚାକିରୀ ସୂତ୍ରେ ବିଦେଶବାସୀ ହେଲେ ମଧ୍ୟ ସ୍ତ୍ରୀମାନେ ଗ୍ରାମବାସିନୀ ହୋଇ ଶ୍ରୀ ଶ୍ରୀ ବିନୋଦବିହାରୀଙ୍କ ପାଇଁ ନିତ୍ୟ ପୁଷ୍ପ ଚୟନ ଓ ଗୁନ୍ଥିବା ରୂପ ସେବା କାର୍ଯ୍ୟରେ ବ୍ରତୀ ଥିଲେ ।

ବିନୋଦବିହାରୀଙ୍କ ମନ୍ଦିର ସଂଲଗ୍ନ ଗୋଟିଏ ଧର୍ମଶାଳା ଅଛି । ଏଠାରେ ବହୁ ସାଧୁସନ୍ଥ ଆଶ୍ରୟ ଗ୍ରହଣ କରୁଥିଲେ । ଶତ ଶତ ରାମାଓତ ବାବାଜୀ ଏକ ସଙ୍ଗରେ ଆସି ଗ୍ରାମବାସୀଙ୍କ ଉପରେ ବହୁ ଅତ୍ୟାଚାର କରୁଥିଲେ; କିନ୍ତୁ ହସ୍ତୀ ଅଶ୍ୱ ପ୍ରଭୃତି ସହ ସାଧୁମାନଙ୍କର ଏକତ୍ର ସମାଗମ ଅତ୍ୟନ୍ତ ଆନନ୍ଦପ୍ରଦ ଥିଲା ।

ପୂର୍ବେ ଏହି ଗ୍ରାମବାସୀ ନରନାରୀ ବଙ୍ଗଳାଭାଷା ବ୍ୟବହାର କଲେ ମଧ୍ୟ ଅତି ଶୁଦ୍ଧ ଭାବରେ ଓଡ଼ିଆ କହିପାରୁଥିଲେ । କେବଳ ଏତିକି ନୁହେଁ, ପାର୍ଶ୍ୱବର୍ତ୍ତୀ ଓଡ଼ିଆମାନଙ୍କ ପ୍ରତି ସେମାନଙ୍କ ଏପରି ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ଥିଲା ଯେ, ଓଡ଼ିଆ-ବଙ୍ଗାଳି ପାର୍ଥକର ଅନୁଭୂତି ସ୍ୱପ୍ନାତୀତ ଥିଲା । ପୁଣି ସେମାନେ ପରସ୍ପର ସହିତ ମିତ, ସଙ୍ଗାତ, ମାମୁଁ, ମାଇଁ, ଭାଇ, ଭଉଣୀ ପ୍ରଭୃତି ନାନା ସାମାଜିକ ସମ୍ବନ୍ଧରେ ଆବଦ୍ଧ ହୋଇ ଏପରି ସରଳ ସୁନ୍ଦର ବ୍ୟବହାର କରୁଥିଲେ ଯେ, ତାହା ପ୍ରକୃତରେ ସମ୍ଭୋଗର ବସ୍ତୁ ଥିଲା । ଏହି ଗ୍ରାମବାସୀ ବୈଦ୍ୟସନ୍ତାନ ଚତୁର୍ଦ୍ଦିଗରେ ଓଡ଼ିଆମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ପରସ୍ପର ଆଚାର ବ୍ୟବହାର ଆଦାନ ପ୍ରଦାନ କରିଅଛନ୍ତି । ମାନବ ପକ୍ଷରେ ଏହା ସ୍ୱାଭାବିକ ।

ଏହି ଗ୍ରାମର ବର୍ତ୍ତମାନ ଅବସ୍ଥା ପୂର୍ବବତ୍ ନୁହେଁ । ଏ ଗ୍ରାମର ଧନୀମାନେ ଦରିଦ୍ର ହୋଇ ଅଛନ୍ତି । ଏମାନଙ୍କ ପ୍ରାସାଦ ଭଗ୍ନଦଶାପ୍ରାପ୍ତ । ମେଲେରିଆର ପ୍ରକୋପରେ ଗ୍ରାମ ଏକ ପ୍ରକାର ଜନଶୂନ୍ୟ ହୋଇଅଛି କହିଲେ ଚଳେ । ପୂର୍ବରୁ ଏଠାରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଅଛି ସତ୍ୟ, ମାତ୍ର ଅଧିକାଂଶ ଗ୍ରାମବାସୀ

ମେଲେରିଆ ଭୟରେ ସପରିବାର ବିଦେଶରେ ବାସ କରୁଅଛନ୍ତି । ପୂର୍ବେ ବୋଲାଯାଇଅଛି ଯେ ଜରିଆ ନଦୀ କ୍ରମଶଃ କ୍ଷୀଣକାୟ ହେଉଅଛି । ଶ୍ରୀ ଶ୍ରୀ ବିନୋଦବିହାରୀଙ୍କ ମହିମା ଏ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଥିଲେ ହେଁ ଦଶକ୍ରୋଶ ଦୂରରୁ ଯାତ୍ରୀମାନେ ମାନସିକ ଦ୍ରବ୍ୟ ଘେନି ଆସୁଥିଲେ ମଧ ଗ୍ରାମବାସୀ ନରନାରୀଙ୍କ ସ୍ୱଚ୍ଛତା ଯୋଗୁଁ ସେବାପୂଜାର ଗାମ୍ଭୀର୍ଯ୍ୟ ଊଣା ହୋଇଅଛି । ବର୍ତ୍ତମାନ ଦଶହରାରେ ବିଶେଷତଃ ଦେଳଯାତ୍ରା ସମୟରେ ଅଧିକାଂଶ ଗ୍ରାମବାସୀ ବିଦେଶରୁ ଆସି ଗୁଣ୍ଠ ହୁଅନ୍ତି -- ପୁଣି ଦିନେ ଦୁଇ ଦିନ ପରେ ଗ୍ରାମକୁ ପରିତ୍ୟାଗ କରନ୍ତି ।

ଅନ୍ୟତ୍ର ପଲ୍ଲିଜୀବନ ଯେପରି କ୍ରମଶଃ ମଳିନ ହେଉଅଛି , ଏଠାରେ ମଧ ସେଇ କଥା । ବିଦେଶବାସୀ ଗ୍ରାମର ନରନାରୀମାନେ ନଦୀର ପଙ୍କୋଦ୍ଧାର କରି ନ ପାରିଲେ ଏ ଗ୍ରାମର ଭବିଷ୍ୟତ ଶୋଚନୀୟ । ଝୋଟ ଧୌତ ହେବା ଦ୍ୱାରା ସକଳ ଗ୍ରାମରେ ଯେପରି ପୁଷ୍କରିଣିମାନ ମେଲେରିଆର ଜନ୍ମଭୂମି ହେଉଅଛି, ଏ ଗ୍ରାମ ମଧ ସେହିପରି । ଏହି ଝୋଟ ଚାଷର ସମ୍ପୂର୍ଣ୍ଣ ଭିନ୍ନ ବ୍ୟବସ୍ଥା ନ କଲେ ପଲ୍ଲୀଗ୍ରାମ ଶ୍ମଶାନଭୂମି ରୂପେ ଅଚିରେ ପରିଣତ ହେବ ।

ଏହି ଗ୍ରାମଟି ବିଭିନ୍ନ ସାହିରେ ବିଭକ୍ତ, ଯଥା:-- ଉପର ସାହି, ମଝି ସାହି, କେଳାଗଡ଼ିଆ ସାହି, ନାଏବ ସାହି, ତଳ ସାହି ପ୍ରଭୃତି । ପ୍ୟାରୀମୋହନଙ୍କ ଗୃହ ଶ୍ରୀ ଶ୍ରୀ ବିନୋଦବିହାରୀଙ୍କ ମନ୍ଦିରର ଅତି ନିକଟବର୍ତ୍ତୀ ନାଏବ ସାହିରେ ବର୍ତ୍ତମାନ । ତାହାଙ୍କ ସମୟର ବହୁ ଗୃହ ନଷ୍ଟ ହୋଇଅଛି ଏବଂ ତାହାଙ୍କ ଆବାସ ଗୃହ ଦ୍ୱିତଳ ପ୍ରାସାଦ ବର୍ତ୍ତମାନ ଭୂମିସାତ୍ ହୋଇଅଛି ।

●

# ତୃତୀୟ ପରିଚ୍ଛେଦ

## ପିତାମାତା

ଏହି ଗ୍ରାମରେ ଜନାର୍ଦ୍ଦନ ସେନ ନାମରେ ଜଣେ ପବିତ୍ରାତ୍ମା ପୁରୁଷ ବାସ କରୁଥିଲେ । ତାହାଙ୍କ କାର୍ଯ୍ୟକଳାପ ଏପରି ବିଶୁଦ୍ଧ ଥିଲା ଯେ, ସମସ୍ତେ ତାହା ଅନୁକରଣ କରିବାକୁ ଇଚ୍ଛା କରୁଥିଲେ । ଆଶ୍ରିତବାତ୍ସଲ୍ୟ ଏବଂ ନିର୍ଲୋଭତା ଏହାଙ୍କ ଜୀବନର ବିଶେଷତ୍ୱ । ଯେତେବେଳେ ସେ କଟକ କଲେକ୍‌ଟରୀ କଚେରୀରେ କାର୍ଯ୍ୟ କରୁଥାନ୍ତି, ସେତେବେଳେ ଗ୍ରାମର ସ୍ୱଜାତୀୟ ଏବଂ ଅନ୍ୟ ଜାତୀୟ ଓଡ଼ିଆ ଓ ବଙ୍ଗାଳି ଛାତ୍ର ତାହାଙ୍କ ବାସଗୃହରେ ରହି କଟକର ସ୍କୁଲମାନଙ୍କରେ ଅଧ୍ୟୟନ କରୁଥାନ୍ତି । ସେତେବେଳେ ସୁବୃହତ୍ ପରିବାରର ରନ୍ଧନକାର୍ଯ୍ୟ ମଧ୍ୟ ଗୃହର ସ୍ତ୍ରୀମାନଙ୍କ ଉପରେ ନ୍ୟସ୍ତ ଥିଲା । କାଳେ ସ୍ତ୍ରୀମାନେ ଆଶ୍ରିତବର୍ଗଙ୍କ ପାଇଁ ରନ୍ଧନ କରିବାକୁ ଯାଇ ବିରକ୍ତ ହେବେ, ସେହି ଆଶଙ୍କାରେ ସେ ପ୍ରତ୍ୟୁଷରୁ ଉଠି, ଦେବାର୍ଚ୍ଚନା ଆଦି ଶେଷ କରି, ରନ୍ଧନରେ ନିଯୁକ୍ତି ହେଉଥିଲେ । ନିଜେ ଉପସ୍ଥିତ ଥାଇ ଛାତ୍ରମାନଙ୍କର ଆହାର ପରିଦର୍ଶନ କରୁଥିଲେ । ସେମାନଙ୍କୁ ବିଦ୍ୟାଳୟକୁ ପଠାଇ ସେ ନିଶ୍ଚିନ୍ତ ହୋଉଥିଲେ । ଏଭଳି ଦୃଷ୍ଟାନ୍ତ ଏ ପୃଥିବୀରେ କେତେ ?

ଜନାର୍ଦ୍ଦନ ବାବୁଙ୍କ ଧର୍ମପରାୟଣତା ସରଳ ଓ ସହଜ ଥିଲା । ସେ ବ୍ରାହ୍ମମୁହୂର୍ତ୍ତ ପୂର୍ବରୁ ଶଯ୍ୟା ତ୍ୟାଗ କରି ସ୍ନାନାଦି ସମାପନ କରୁଥିଲେ । ତତ୍‌ପରେ ପ୍ରାତଃକାଳ ପର୍ଯ୍ୟନ୍ତ ଭଗବତ୍ ଧ୍ୟାନରେ ନିଯୁକ୍ତ ରହୁଥିଲେ । ନୀରବ ପ୍ରାଥନା ତାହାଙ୍କୁ ପ୍ରୀତିକର ବୋଧ ହେଉଥିଲା । ସେ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ତେଣୁ ତାହାଙ୍କ କଟକସ୍ଥ ନିବାସରେ ସେ ଶ୍ରୀ ଶ୍ରୀ ରାଧାମାଧବଙ୍କ ମୂର୍ତ୍ତି ପ୍ରତିଷ୍ଠା କରି ଯାଇଅଛନ୍ତି । ସନ୍ତୋଷପୁର ଓ

ନୋଠାବର ନାମକ କଟକ ଜିଲ୍ଲାସ୍ଥ ତାହାଙ୍କ. ତାହାଙ୍କ ଦୁଇ ମଉଜାର ଆୟରୁ ସେ ରାଧାମାଧବଙ୍କ ସେବାପୂଜା ନିମିତ୍ତ ଆବଶ୍ୟକ ଅର୍ଥ ଓ ଦ୍ରବ୍ୟ ସଂଗ୍ରହ କରୁଥିଲେ । ସେହି ଜମିର ଆୟରୁ ଆଜି ପର୍ଯ୍ୟନ୍ତ ରାଧାମାଧବଙ୍କ ରାସଯାତ୍ରା ମଧ୍ୟ ପ୍ରତିବର୍ଷ ସମାରୋହସହ ଅନୁଷ୍ଠିତ ହୁଏ ଏବଂ ବହୁବ୍ୟକ୍ତି ସେଦିନ ପ୍ରଭୁଙ୍କ ପ୍ରସାଦ ସେବନ କରନ୍ତି ।

ଆମ୍ଭେମାନେ କହିଅଛୁଁ ଯେ ସେ କଲେକ୍‌ଟରୀ କଚେରୀର ଶିରସ୍ତାଦାର ଥିଲେଖ; ତେଣୁ ତାହାଙ୍କ ପ୍ରତିପତ୍ତି ଯଥେଷ୍ଟ ଥିଲା । ତାହାଙ୍କ ଦ୍ୱାରା ବହୁ ଗୁରୁତର କାର୍ଯ୍ୟର ସମାଧାନ ସମ୍ଭବପର ଥିଲା । ତେଣୁ ବହୁବ୍ୟକ୍ତି ଉତ୍କୋଚ ଦ୍ୱାରା ତାହାଙ୍କୁ ବଶୀଭୂତ କରିବାକୁ ଚେଷ୍ଟା କରିଥିଲେ । ବୋଲିବା ବାହୁଲ୍ୟ ଯେ ସେ କଦାପି ଉତ୍କୋଚ - ଜାଲରେ ପଡ଼ି ନାହାନ୍ତି । ଥରେ କୁଜଙ୍ଗ କିଲ୍ଲା ବିପନ୍ନ ହେବା ସମୟରେ ସେହି ଜିଲ୍ଲାର ପ୍ରଧାନ ରାଜକର୍ମଚାରୀ ମହୋଦୟ ତିନିତୋଡ଼ା ଟଙ୍କା ( ପ୍ରାୟ ତିନି ହଜାର ଟଙ୍କା) ଆଣି ତାହାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ତାହାଙ୍କୁ କୌଣସି କାର୍ଯ୍ୟ ନିର୍ବାହ କରିବା ପାଇଁ ଅନୁରୋଧ କଲେ । ଜନାର୍ଦ୍ଦନ ବାବୁ ଟଙ୍କା ତୋଡ଼ାମାନ ଉଠାଇ ନେବାପାଇଁ ବହୁ ଅନୁରୋଧ କଲେ ମଧ୍ୟ ଉକ୍ତ କର୍ମଚାରୀ ମହୋଦୟ ସେଥିରେ କର୍ଣ୍ଣପାତ କଲେ ନାହିଁ । ଅବଶେଷରେ ଜନାର୍ଦ୍ଦନ ବାବୁ ଏହି ସର୍ତ୍ତ କଲେ ଯେ, ଯଦି ରାଜାଙ୍କ କାର୍ଯ୍ୟ ଜୟଯୁକ୍ତ ନହୁଏ ସେ ସେଥିରୁ ଗୋଟିଏ ମୁଦ୍ରା ମଧ୍ୟ ଗ୍ରହଣ କରିବେ ନାହିଁ । ଫଳତଃ ସେ ରାଜଙ୍କୁ ବିପଦରୁ ଉଦ୍ଧାର କରି ନପାରି ତିନିତୋଡ଼ା ଟଙ୍କା ସାଙ୍ଗେ ସାଙ୍ଗେ ଫେରାଇ ଦେଲେ । ତାହାଙ୍କ ପାରିଶ୍ରମିକ ସ୍ୱରୂପ ଗୋଟିଏ ତୋଡ଼ା ରଖିବାକୁ ବିଶେଷ ଭାବେ ଅନୁରୋଧ ହୋଇ ମଧ୍ୟ ସେ ଅନୁରୋଧ ରକ୍ଷା କଲେ ନାହିଁ । ଏହି ଘଟଣା ଲୋକେ ଶ୍ରବଣ କରି ତାହାଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ବଙ୍ଗଳା ପରିବର୍ତ୍ତେ ଓଡ଼ିଶାରେ ଓଡ଼ିଆ ଭାଷାର ପ୍ରସାର ପାଇଁ ଗୌରୀଶଙ୍କର ବିଚିତ୍ରାନନ୍ଦ ପ୍ରଭୃତି ଯେଉଁମାନେ ଅକ୍ଲାନ୍ତ ଚେଷ୍ଟା କରିଥିଲେ, ଜନାର୍ଦ୍ଦନ ବାବୁ ସେମାନଙ୍କ ମଧ୍ୟରେ ଅନ୍ୟତମ । ଓଡ଼ିଆ ପୁସ୍ତକମାନଙ୍କ ମୁଦ୍ରଣ ନିମିତ୍ତ କଟକ ପ୍ରିଣ୍ଟିଂ କମ୍ପାନୀର ଗଠନମୂଳରେ ଜନାର୍ଦ୍ଦନ ବିଦ୍ୟାମାନ । ସେ ସର୍ବପ୍ରଥମେ ଅର୍ଥ ସାହାଯ୍ୟ କରିବାକୁ ସ୍ୱୀକୃତି ହେଲେ । ସେ ବଙ୍ଗଳା ପାଞ୍ଜି ବ୍ୟବହାର ନକରି ଓଡ଼ିଆ ପାଞ୍ଜି ବ୍ୟବହାର କରୁଥିଲେ ଏବଂ ତାଙ୍କର ବଂଶଧରମାନେ ଏପର୍ଯ୍ୟନ୍ତ ଓଡ଼ିଆ ପାଞ୍ଜିର ଗଣନାନୁଯାୟୀ ଚଳିତ ।

ଶାସ୍ତ୍ରରେ ଅଛି, "ଜୀବର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।" ଜନାର୍ଦ୍ଦନ ବାବୁ କିପରି ପବିତ୍ର ଜୀବନ ଯାପନ କରିଥିଲେ, ତାହା ତାହାଙ୍କ ଅନ୍ତିମ କାଳରେ ଗୋଟିଏ ଘଟଣାରୁ ସୁସ୍ପଷ୍ଟ ଭାବରେ ପ୍ରତୀୟମାନ । ଦିନେ ସେ କଚେରୀରେ କାର୍ଯ୍ୟ କରୁଅଛନ୍ତି; ଗୃହକୁ ଆସିବାର ଅଳ୍ପକ୍ଷଣ ପୂର୍ବେ କଲେକ୍‌ଟର ସାହେବଙ୍କ ସହିତ ସାକ୍ଷାତ କଲେ । ସେହି ସମୟରେ ଜନାର୍ଦ୍ଦନ ବାବୁ ସାହେବଙ୍କୁ କହିଲେ, "ଆଜ୍ଞା, ମୋଠାରୁ ଆଜି ସମସ୍ତ ବୁଝି ନିଅନ୍ତୁ , ମୁଁ ଆଉ କାଲିଠାରୁ ଆସି ପାରିବି ନାହିଁ ।" ସାହେବ ମହୋଦୟ ଆପଣାର ଚରିତ୍ରବାନ୍ ଶେରସ୍ତାଦାରଙ୍କ ମୁହଁରୁ ଏବମ୍ବିଧ କଥା ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାହାଙ୍କ ମୁହଁକୁ ଚାହିଁ ରହିଲେ । ପରେ ସେ କହିଲେ, ଆପଣ କଣ ପୀଡ଼ିତ ହୋଇ ଅଛନ୍ତି ? କାଲି ଆସି ପାରିବେ ନାହିଁ ?" ଜନାର୍ଦ୍ଦନ ବାବୁ କହିଲେ, " ମହାଶୟ, ଏ ପୃଥିବୀରେ ଆଜି ମୋର ଶେଷଦିବସ । ଆପଣ ମୋ କଥାରେ ବିଶ୍ୱାସ କରନ୍ତୁ !" ସାହେବ ମହୋଦୟ ସତ୍ୟବାଦୀ ଭକ୍ତିଭାଜନ କର୍ମଚାରୀଙ୍କ କଥା ବିଶ୍ୱାସ ନ କରି ରହିପାରିଲେ ନାହିଁ । ସେ କଚେରୀରସମସ୍ତ ଚାବି ଓ ଅନ୍ୟାନ୍ୟ ବିଷୟ ତାହାଙ୍କଠାରୁ ବୁଝି ନେଇ ସନ୍ତପ୍ତ ହୃଦୟରେ ତାହାଙ୍କୁ ବିଦାୟ ଦେଲେ ।

ଏଣେ ଜନାର୍ଦ୍ଦନ ବାବୁ ଗୃହକୁ ପ୍ରତ୍ୟାବର୍ତ୍ତନ କରି କଚେରୀର ବେଶଭୂଷା ପରିତ୍ୟାଗ କଲେ । ସେ ନିଜର ସ୍ତ୍ରୀଙ୍କୁ କହିଲେ, "ମୁଁ ବିଶ୍ରାମ କରିବି, ମୋ ପାଇଁ ବିଛଣା କର ।" ସ୍ତ୍ରୀ ତାହାଙ୍କ କଥାନୁରୂପ କାର୍ଯ୍ୟ କଲେ । ତହୁଁ ଜନାର୍ଦ୍ଦନ ବାବୁ ଜପମାଳା ହସ୍ତରେ ଘେନି ହରିନାମ ଜପିବାକୁ ଲାଗିଲେ । ଏଣେ ଜଗନ୍ନାଥଙ୍କ ନାମ ମଧ୍ୟେ ମଧ୍ୟେ ଉଚ୍ଚାରଣ କରୁଥାନ୍ତି । କିଛିକ୍ଷଣ ଜପ ବନ୍ଦ କରି ସେ ସ୍ତ୍ରୀଙ୍କୁ କହିଲେ; " ମୁଁ ତୁମ୍ଭଙ୍କୁ ଯୋଡ଼ିଏ ଯୋଗ୍ୟପୁତ୍ର ଦେଇଅଛି । ତୁମ୍ଭର କିଛି ଭାବନା ନାହିଁ ।" ସେ ପୁଣି ଜ୍ୟେଷ୍ଠପୁତ୍ର ପ୍ୟାରୀମୋହନଙ୍କୁ କହିଲେ, 'ଦେଖ୍ , ତୋର ସାନ ଭାଇର ଶିକ୍ଷା ସମାପ୍ତ ହୋଇନାହିଁ , ତାହାର ଭାର ତୋ ଉପରେ ରହିଲା ।" ସଂସାରିକ କଥା ଏତିକି କହି ସଂସାର ସହିତ ସେ ସମସ୍ତ ସମ୍ବନ୍ଧ ଛିନ୍ନ କଲେ । ପୁଣି ଜପାମାଳା ହସ୍ତରେ ଧରି ସେ ହରିନାମ ଜପରେ ମତ୍ତ ହେଲେ । ତାହାଙ୍କ ଅସ୍ଥିରତା ଦେଖି ପୁତ୍ର ପ୍ୟାରୀମୋହନ ଡାକ୍ତର ଅଣାଇଲେ । ଡାକ୍ତର ରୋଗ ଚିହ୍ନି ନ ପାରି 'ବିକାର' ହୋଇଅଛି ବୋଲି ମତ ପ୍ରକାଶ କଲେ । ଜନାର୍ଦ୍ଦନ ବାବୁ ପୁତ୍ରକୁ ବାରମ୍ବାର ପୂର୍ବରୁ କହି ଦେଇଥାନ୍ତି ଯେ, ସେ କଦାପି ଡାକ୍ତରୀ ଔଷଧ ସ୍ପର୍ଶ କରିବେ ନାହିଁ । ବିଶେଷତଃ କୌଣସି ଔଷଧ ତାହାଙ୍କୁ ରଖିପାରିବ ନାହିଁ । ପ୍ରାୟ ସମସ୍ତ ରାତ୍ରି ଜଗନ୍ନାଥଙ୍କ ନାମ

ଉଚ୍ଚାରଣରେ ଅତିବାହିତ ହେଲା । ଏକାଦଶୀ ଯାଇ ଦ୍ୱାଦଶୀ ଉପସ୍ଥିତ । ପ୍ରାୟ ପ୍ରତ୍ୟୁଷ ସମୟରେ ସେ ସ୍ତ୍ରୀଙ୍କୁ କହିଲେ, " ଆଉ ମୋ ବିଛଣା ଘର ମଧ୍ୟରେ ରଖ ନାହିଁ । ରାଧାମାଧବଙ୍କ ସମ୍ମୁଖକୁ ଘେନିଯାଅ । ଘର ମଧ୍ୟରେ ପ୍ରାଣ ତ୍ୟାଗ କଷ୍ଟକର ।" ଏହା କହି ସେ ନିଜେ ରାଧାମାଧବଙ୍କ ମନ୍ଦିର ପାଖକୁ ଉଠି ଆସିଲେ । ସଙ୍ଗେ ସଙ୍ଗେ ଶ୍ରୀ ଶ୍ରୀ ରାଧାମାଧବଙ୍କ ସମ୍ମୁଖକୁ ତାହାଙ୍କ ଶଯ୍ୟା ନୀତ ହେଲା । ସେ ସେହି ବିଛଣାରେ ବସି କିଛିକାଳ ଧ୍ୟାନସ୍ଥ ରହିଲେ । ପରେ ଶୋଇପଡ଼ି ହରିନାମର ମାଳା ଗଳାରେ ଦେଇ ହରିନାମ ଉଚ୍ଚାରଣ କରୁ କରୁ ନିରୋଗ ଶରୀରରେ ପ୍ରାଣତ୍ୟାଗ କଲେ । ଏ ଭଳି ମୃତ୍ୟୁ ଏ ଜଗତରେ ବିରଳ ।

ଏହାଙ୍କ ମୃତ୍ୟୁ ସମ୍ବାଦ ଶୁଣି ସ୍ୱୟଂ କଲେକ୍‌ଟର ସାହେବ ତାହାଙ୍କ ଗୃହରେ ଉପସ୍ଥିତ ହେଲେ । ଶିରସ୍ତାଦାରଙ୍କ ମୃତ୍ୟୁରେ କିଲେଟରୀ ତଥା ଅଦାଲତ କଚେରୀମାନ ବନ୍ଦ ହୋଇଥିଲା ।

ଯାହାହେଉ ପ୍ୟାରୀମୋହନଙ୍କ ପିତା ଯେପରି ଥିଲେ, ମାତା ମଧ୍ୟ ପ୍ରାୟ ସେହିପରି ଥିଲେ । ତାହାଙ୍କ ମାତା ରୂପରେ ଦୁର୍ଗାଙ୍କ ପରି ଏବଂ ଗୁଣରେ ଊଣା ନ ଥିଲେ । ପ୍ରତି କାର୍ଯ୍ୟରେ ସ୍ୱାମୀଙ୍କ ଇଚ୍ଛାନୁବର୍ତ୍ତିନୀ ହେବା ତାହାଙ୍କ ଜୀବନର ମୂଳମନ୍ତ୍ର ଥିଲା । ସ୍ୱାମୀ ଶୁଦ୍ଧ ଭାବରେ ଅର୍ଥାର୍ଜନବିଷୟରେ ଯେପରି ସୁପଟୁ ଥିଲେ, ସ୍ତ୍ରୀ ରକ୍ଷଣାବେକ୍ଷଣରେ ସେହିପରି ପଟୁତା ପ୍ରଦର୍ଶନ କରିଥିଲେ । ବୃହତ୍ ପରିବାରର କର୍ତ୍ତ୍ରୀ ହୋଇ ସେ ଯେପରି ସୂଚାରୁ ଭାବରେ କାର୍ଯ୍ୟକରୁଥିଲେ, ତହିଁରେ ସମସ୍ତେ ତାହାଙ୍କ ପ୍ରତି ଅନୁରକ୍ତ ଥିଲେ । ସେ ପୁତ୍ର କନ୍ୟା ମାନଙ୍କୁ ଯଥାର୍ଥ ଭାବରେ ଶାସନ କରୁଥିଲେ । ଚତୁର୍ଦ୍ଦିଗକୁ ତାହାଙ୍କ ଚକ୍ଷୁ ଚାଳିତ ହେଉ ଥିଲା । ଗୃହରୁ କୌଣସି ପଦାର୍ଥ କାହାରି ଗୋପନରେ ନେବା ଦୁଷ୍କର ଥିଲା । ସେ ଅତି ମୃଦୁ ପଦଶବ୍ଦ ଶୁଣି ପାରୁଥିଲେ ଏବଂ ଚୋରକୁ ସଙ୍ଗେ ସଙ୍ଗେ ଧରି ଅପଦସ୍ଥ କରୁଥିଲେ ।

ବହୁକାଳ ପର୍ଯ୍ୟନ୍ତ ଏହି ଦମ୍ପତିଙ୍କର କୌଣସି ସନ୍ତାନ ସନ୍ତତି ହୋଇ ନଥିଲେ । ତେଣୁ ଏମାନେ ବହୁ ଯାଗଯଜ୍ଞ ଦାନାଦିର ବ୍ୟବସ୍ଥା କରିଥିଲେ । ସେଥିରେ ମଧ୍ୟ କୌଣସି ଫଳୋଦୟ ହେଲା ନାହିଁ । ଅବଶେଷରେ ସନ୍ତାନର ଆକାଙ୍କ୍ଷା କରି ଏହି ଦମ୍ପତି କ୍ଷେତ୍ର ଦର୍ଶନରେ ବହିର୍ଗତ ହୋଇଥିଲେ । କାଶୀ, ଗୟା, ମଥୁରା ବୃନ୍ଦାବନ ପ୍ରଭୃତି କ୍ଷେତ୍ରମାନ ଦର୍ଶନ କରି ଏମାନେ ପ୍ରାୟ ୫।୬ ମାସ ପରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

●

# ଚତୁର୍ଥ ପରିଚ୍ଛେଦ

## ଜନାର୍ଦ୍ଦନଙ୍କ ସନ୍ତାନ ସନ୍ତତି

କ୍ଷେତ୍ର ବା ତୀର୍ଥଭ୍ରମଣରୁ ପ୍ରତ୍ୟାବର୍ତ୍ତନ କରିବାର କିଛିକାଳ ପରେ ଜନାର୍ଦ୍ଦନଙ୍କ ଗୋଟିଏ କନ୍ୟା ଜାତ ହେଲା । ପିତାମାତା ଏହି କନ୍ୟାର ନାମ କ୍ଷେତ୍ରମଣି ରଖିଲେ । ବୋଲିବା ବାହୁଲ୍ୟ ଯେ, ସ୍ୱର୍ଗତା ଏହି କ୍ଷେତ୍ରମଣି ଦେବୀ ଲେଖକର ପିତାମହୀ । ତତ୍‌ପରେ ଆମ୍ଭମାନଙ୍କ ପ୍ୟାରୀମୋହନଙ୍କ ଜନ୍ମ । ସେ ୧୨୪୭ ସାଲ ( ୧୮୩୯ ଖ୍ରୀଷ୍ଟାବ୍ଦ ) ୬ କର୍କଟର ଦ୍ୱାଦଶ ଦିବସରେ ଆଷାଢ଼ମାସ ପୂର୍ଣ୍ଣମା ଗୁରୁବାର ଦିନ ଭୂମିଷ୍ଠ ହୋଇଥିଲେ । ଏହାଙ୍କ ପରେ ରତନମଣି, ରାମମଣି, କିଶୋରୀମଣି ନାମ୍ନୀ ତିନୋଟି କନ୍ୟା ଜାତ ହେଲା । ଏ ମହୋଦୟ ପରେ ଶ୍ରୀଯୁକ୍ତ ଗୋପୀମୋହନ ସେନ ନାମରେ ବଦିତ ।

ଜନାର୍ଦ୍ଦନ ବାବୁ ନିଜର ଚାରିଗୋଟି କନ୍ୟା ମଧ୍ୟରୁ ପ୍ରଥମ ଓ ଦ୍ୱିତୀୟ କନ୍ୟାଙ୍କୁ ନିଜ ଗ୍ରାମରେ, ତୃତୀୟ କନ୍ୟାଙ୍କୁ ବଙ୍ଗଦେଶରେ ଏବଂ କନିଷ୍ଠା କନ୍ୟାଙ୍କୁ ଭଦ୍ରଖରେ ବିବାହ ଦେଲେ । ଯେଉଁମାନଙ୍କୁ ସେ ବଙ୍ଗଦେଶ ଓ ଭଦ୍ରଖରେ ବିବାହ ଦେଇଥିଲେ, ସେମାନଙ୍କ ବିଚ୍ଛେଦ ସମ୍ଭାଳି ନ ପାରି, ଜାମାତାମାନଙ୍କ ସହ କନ୍ୟାମାନଙ୍କୁ ନିଜ ଗ୍ରାମକୁ ଘେନି ଆସିଲେ ଏବଂ ନିଜ ବ୍ୟୟରେ ସେମାନଙ୍କ ବାସଗୃହ ନିର୍ମାଣ କରିଦେଲେ । ଏଥିରୁ ଜନାର୍ଦ୍ଦନ ବାବୁଙ୍କ ସନ୍ତାନ ବାତ୍ସଲ୍ୟ ସହଜରେ ଅନୁମେୟ ।

କ୍ଷୁଦ୍ର ରଘୁନାଥ ନଗର ଗ୍ରାମରେ ପ୍ରାୟ ସର୍ବତ୍ର ଜନାର୍ଦ୍ଦନ ବାବୁଙ୍କ ବଂଶଧରମାନେ ବୈବାହିକ ସୂତ୍ରରେ ଆବଦ୍ଧ ହୋଇଅଛନ୍ତି । ତେଣୁ ତାହାଙ୍କ ପରିବାର ଆଜି ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ନୁହେଁ ।

●

# ପଞ୍ଚମ ପରିଚ୍ଛେଦ

## ପ୍ୟାରୀମୋହନଙ୍କ ବାଲ୍ୟକାଳ ଓ ଶିକ୍ଷା

ପ୍ୟାରୀମୋହନ ପିତାଙ୍କ ନିକଟରେ କଟକ ସହରରେ ଅବସ୍ଥାନ କରି ବିଦ୍ୟାଶିକ୍ଷା କରିବାକୁ ଲାଗିଲେ । ପିତାମାତା ବହୁ ଆରାଧନା କରି ଗୋଟିଏ ପୁତ୍ରସନ୍ତାନ ଲାଭ କରି ଅଛନ୍ତି । ତେଣୁ ସେମାନେ ତାହାଙ୍କ ପ୍ରତି ଅତ୍ୟନ୍ତ ସ୍ନେହପ୍ରବଣ ହେଲେ । ସେ ମାଟି ଅବଧାନଙ୍କ ନିକଟରେ ବିଦ୍ୟାରମ୍ଭ କରିଥିଲେ । ତତ୍‌ପରେ କଟକର ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲେ । ସ୍କୁଲରେ ଯେଉଁ ସମୟତକ ତାହାଙ୍କୁ ରହିବାକୁ ପଡୁଥିଲା ସ୍ନେହମୟୀ ମାତାଙ୍କ ଉତ୍‌କଣ୍ଠିତ ଚକ୍ଷୁ ସର୍ବଦାସେହି ସ୍କୁଲ ଆଡ଼କୁ ଚାଳିତ ହେଉଥିଲା । ସ୍ୱାମୀଙ୍କ ଶାସନର ବଶବର୍ତ୍ତୀ ହୋଇ ସେ ଅଗତ୍ୟା ପୁତ୍ରକୁ ବିଦ୍ୟାଳୟକୁ ପଠାଉ ଥିଲେ । ସେତେବେଳେ ସ୍କୁଲର ଶିକ୍ଷକମାନେ ଅଳ୍ପ ଦୋଷରେ ବେତ୍ର ଚାଳନା କରୁଥିଲେ । ପ୍ୟାରୀମୋହନ ଦିନେ ସ୍ୱଶରୀରରେ ବେତ୍ରାଘାତର ଚିହ୍ନ ଧାରଣ କରି ଗୃହକୁ ଫେରି ଆସିଲେ । ତାଙ୍କ ମନରେ ଏହି ଆଶଙ୍କା ହେଲା ଯେ, ମାତା ଯଦି ପୃଷ୍ଠଦେଶରେ ସେ ଚିହ୍ନ ଦେଖନ୍ତି, ତେବେ ଆଉ ତାହାଙ୍କୁ ସ୍କୁଲକୁ ଛାଡ଼ିବେ ନାହିଁ । ତେଣୁ ଆଘାତପ୍ରାପ୍ତି ବିଷୟରେ କାହାରିକି କିଛି ନ କହି ସେ ପରିଧେୟ ବସନ ଦ୍ୱାରା ସ୍ୱଶରୀର ଆବୃତ୍ତ କରି ରଖିଲେ । ତାହାଙ୍କର ଏପରି ଅଭୂତପୂର୍ବ ଆଚରଣରେ ମାତାଙ୍କ ସନ୍ଦେହ ଉପସ୍ଥିତ ହେଲା । ପରେ ସେ ପୁତ୍ରର କାୟକ୍ଳେଶ କଥା ଶୁଣି ଆଉ ତାହାଙ୍କୁ ସ୍କୁଲକୁ ପଠାଇଲେ ନାହିଁ । ପ୍ୟାରୀମୋହନ ବାଲ୍ୟକାଳରୁ ପାଠ ପ୍ରତି ଶ୍ରଦ୍ଧାବାନ୍ ଥିଲେ । ଅତଏବ ସ୍କୁଲରୁ ବିଛିନ୍ନ ହୋଇ ରହିବା ତାହାଙ୍କ ପକ୍ଷରେ କଷ୍ଟକର ହେଲା । ସେ ମାତାଙ୍କୁ ବହୁ ଭାବରେ ସାନ୍ତ୍ୱନା ଦେଇ ତାହାଙ୍କ ଅନୁମତି ଘେନି ପୁଣି ସ୍କୁଲକୁ ଗଲେ । ଏହିପରି ଭାବରେ କଟକ ଜିଲ୍ଲା ସ୍କୁଲରେ ଅଧ୍ୟୟନ

କରି ଏହିଠାରୁ ସେ ପ୍ରବେଶିକା ପରୀକ୍ଷାରେ କୃତିତ୍ୱ ସହିତ ଉତ୍ତୀର୍ଣ୍ଣ ହେଲେ ।

ସେତେବେଳେ ୧୮୬୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ କଲେଜ ନଥିଲା । କାରଣ ଓଡ଼ିଶାର ଏକମାତ୍ର କଲେଜ ଅର୍ଥାତ୍ ରେଭେନ୍ସା କଲେଜ ୧୮୭୬ ସାଲରେ ପ୍ରତିଷ୍ଠିତ ହେଲା । ତେଣୁ ପ୍ରବେଶିକା ପରୀକ୍ଷା ପରେ ଉତ୍କଳୀୟ ଯୁବକମାନଙ୍କର ଉଚ୍ଚ ଶିକ୍ଷାର ଦ୍ୱାର ରୁଦ୍ଧ ଥିଲା । ଯେଉଁମାନେ ଉଚ୍ଚଶିକ୍ଷାଭିଳାଷୀ, ସେମାନଙ୍କୁ ବଙ୍ଗଦେଶକୁ ଯିବାକୁ ହେଉଥିଲା । କର୍ମଯୋଗୀ ଗୌରୀଶଙ୍କର ଯେପରି ଉଚ୍ଚ ଶିକ୍ଷା ନିମିତ୍ତ ହୁଗୁଳି ଜିଲ୍ଲାର ହୁଗୁଳି କଲେଜକୁ ବହୁ କଷ୍ଟ ସ୍ୱୀକାର କରି ଯାଇଥିଲେ, ଆମ୍ଭମାନଙ୍କ ପ୍ୟାରୀମୋହନ ସେହିପରି ବଙ୍ଗଦେଶର କୌଣସି କଲେଜରେ ଉଚ୍ଚ ଶିକ୍ଷା ଲାଭ ନିମିତ୍ତ ଆକାଙ୍କ୍ଷା ପ୍ରକାଶ କଲେ । ତାହାଙ୍କ ମାତା ଏ ପ୍ରସ୍ତାବ ଶୁଣି କେବଳ ପାପର ଆଶଙ୍କା କରିବାକୁ ଲାଗିଲେ--କାରଣ ସ୍ନେହ ପାପର ଆଶଙ୍କା କରେ । ସେ କୌଣସି ପ୍ରକାରେ ପୁତ୍ରକୁ ଦୂର ଦେଶକୁ ପଠାଇବାକୁ ସମ୍ମତ ହେଲେ ନାହିଁ । ଯଦି ସେତେବେଳେ ତାହାଙ୍କ କ୍ରୋଡ଼ରେ ଗୋପୀମୋହନ ନ ଥାନ୍ତେ, ତେବେ ପ୍ୟାରୀମୋହନଙ୍କ ଉଚ୍ଚ ଶିକ୍ଷା ଲାଭର ଚେଷ୍ଟା ସ୍ୱପ୍ନରେ ପରିଣତ ହୋଇଥାନ୍ତା । ପୁତ୍ରର ବହୁ ଅନୁନୟ, ବିନୟ ଏବଂ ସ୍ୱାମୀଙ୍କ ବହୁ ଜ୍ଞାନପୂର୍ଣ୍ଣ ଉପଦେଶ ତାହାଙ୍କ ମନକୁ ଦ୍ରବୀଭୂତ କଲା । ସେ ପୁତ୍ରକୁ ଛାଡ଼ିଦେଲେ ସତ୍ୟ, କିନ୍ତୁ ଯେଉଁ ସମୟତକ ପୁତ୍ର ବିଦେଶରେ ରହିଲେ, ମାତା ସେହି ସମୟରେ କଳ୍ପନା ଚକ୍ଷୁରେ ପୁତ୍ର ମୁଖ ଦର୍ଶନ କରୁଥାନ୍ତି । ପ୍ୟାରୀବାବୁ ପାଲିଙ୍କି ସାହାଯ୍ୟରେ ପ୍ରାୟ ଅଠର ଦିନର ଦୁର୍ଗମ ପଥ ଅତିକ୍ରମ କରି କୃଷ୍ଣ ନଗର କଲେଜରେ ଉପସ୍ଥିତ ହେଲେ । ସେଠାରେ ଦୁଇ ବର୍ଷ କାଳ ଗଭୀର ଅଧ୍ୟୟନ କରି ଏଫ୍, ଏ ପାସ୍ କଲେ । ଏଫ୍, ଏ, ପାସ୍ କରିବା ପରେ ବି. ଏ. ପରୀକ୍ଷା ଦେଇ ଉତ୍କଳ ଭୂମିକୁ ପ୍ରତ୍ୟାବର୍ତ୍ତନ କରିବେ, ଏହି ଅଭିଳାଷ ପିତାଙ୍କୁ ଜଣାଇଲେ । ପିତା ଓ ମାତା ଉଭୟ ଅଧୀର ହୋଇ ପଡ଼ିଥିଲେ । ତେଣୁ ପୁତ୍ରକୁ ଶୀଘ୍ର ପ୍ରତ୍ୟାବର୍ତ୍ତନ କରିବା ପାଇଁ ଲୋକ ହସ୍ତରେ ପତ୍ର ଓ ଟଙ୍କା ପଠାଇ ଦେଲେ । ପ୍ୟାରୀମୋହନ ଅଗତ୍ୟା ପ୍ରତ୍ୟାଗତ ହେଲେ । ସେ ଆଉ ବି. ଏ. ପଢ଼ି ପାରିଲେ ନାହିଁ । କିନ୍ତୁ ତାହାଙ୍କ ଅବସର ସମୟରେ ସେ ବହୁ ଜ୍ଞାନପୂର୍ଣ୍ଣ ପୁସ୍ତକମାନ ପାଠ କରି ଜ୍ଞାନ-ପିପାସା ଚରିତାର୍ଥ କରୁଥିଲେ ।

ପିତା ପୁତ୍ରକୁ କେବଳ ଆର୍ଥିକ ବଦ୍ୟା ଶିକ୍ଷା ଦେଇ ନିଶ୍ଚିନ୍ତ ନ ଥିଲେ । ପୁତ୍ର କିପରି ପାରମାର୍ଥିକ ଚିନ୍ତାରେ ଅଭ୍ୟସ୍ତ ହେବ, ସେଥିପାଇଁ ତାହାଙ୍କୁ କୁଳଗୁରୁଙ୍କ ଦ୍ୱାରା ଦୀକ୍ଷିତ କରାଇଥିଲେ । ପ୍ୟାରୀମୋହନ ବଲ୍ୟକାଳରେ ମାଳା ଧାରଣ କରି ଦେବ ପୂଜା କାର୍ଯ୍ୟରେ କିଛି ସମୟ ବ୍ୟୟ କରୁଥିଲେ ।

ପ୍ୟାରୀମୋହନ ଯେତେବେଳେ ବଙ୍ଗଦେଶକୁ ଯାଇଥିଲେ, ସେତେବେଳେ ସେଠାରେ ବ୍ରାହ୍ମଧର୍ମର ସ୍ରୋତ ପ୍ରବାହିତ । ସେ ସେହି ଧର୍ମ ପ୍ରଭାବରେ ଗଳାରେ ମାଳା ଧାରଣ କରିବା ପାଇଁ ଲଜ୍ଜା ବୋଧ କଲେ । କଟକରେ ପହଞ୍ଚିବାବେଳେ ତାଙ୍କ ଗଳାରେ ମାଳା ନ ଥିଲା । ତାହାଙ୍କ ପିତା କାର୍ତ୍ତିକ, ମାଘ ଓ ବୈଶାଖ ମାସ ମାନଙ୍କରେ ହବିଷ୍ୟ କରୁଥିଲେ ଏବଂ କାହାରି ଗଳାରେ ମାଳା ନ ଥିଲେ ସେ ତାହା ହସ୍ତରୁ ଜଳ ଗ୍ରହଣ କରୁ ନ ଥିଲେ । ଏହି ସମୟରେ ଥରେ ପ୍ୟାରୀମୋହନ ପିତାଙ୍କ ମନୋଭାବ ଜାଣି ନ ପାରି ତାହାଙ୍କ ନିମିତ୍ତ ପ୍ରସ୍ତୁତ ଅନ୍ନ ସ୍ପର୍ଶ କଲେ । ବୈଷ୍ଣବଧର୍ମାବଲମ୍ବୀ ପିତା ନିଜ ସ୍ତ୍ରୀଙ୍କୁ ସାବଧାନ କରିଦେଲେ ଯେ, ସେ ପୁତ୍ରର ଧର୍ମବିଶ୍ୱାସ ଉପରେ ହସ୍ତକ୍ଷେପ କରିବାକୁ ଚାହାନ୍ତି ନାହିଁ -- କିନ୍ତୁ ଭବିଷ୍ୟତରେ ପୁତ୍ର ଯେପରି ତାହାଙ୍କ ପାଇଁ ପ୍ରସ୍ତୁତ ଅନ୍ନାଦି ସ୍ପର୍ଶ ନ କରେ । ପ୍ୟାରୀମୋହନ ମଧପିତାଙ୍କ ମନୋଭାବ ବୁଝିପାରି ଭବିଷ୍ୟତରେ ପିତାଙ୍କ ନିମିତ୍ତ ପ୍ରସ୍ତୁତ ଖାଦ୍ୟ ବା ପାନୀୟ ସ୍ପର୍ଶ କରିବାର ପ୍ରୟୋଜନ ପଡ଼ିଲେ ଗଳାରେ ମାଳା ଧାରଣ କରି ତାହା କରୁଥିଲେ ।

●

# ଷଷ୍ଠ ପରିଚ୍ଛେଦ

## ଯୌବନ ଓ କର୍ମକ୍ଷେତ୍ର

### ( ୧ )

ପ୍ୟାରୀମୋହନ କୃଷ୍ଣନଗର କଲେଜରୁ ଶିକ୍ଷା ସାଙ୍ଗ କରି ପ୍ରତ୍ୟାବର୍ତ୍ତନ କରିବା ପରେ ପିତା ତାହାଙ୍କୁ ରଘୁନାଥ ନଗରବାସିନୀ ଶ୍ରୀମତୀ ପ୍ରିୟସଖୀ ଦେବୀଙ୍କ ସହିତ ପରିଣୟ ସୂତ୍ରରେ ଆବଦ୍ଧ କଲେ । ତିନୋଟି କନ୍ୟା ଓ ଏକମାତ୍ର ପୁତ୍ର ଶ୍ରୀଯୁକ୍ତ ଭୁବନମୋହନ ଏହି ଦମ୍ପତିଙ୍କ କ୍ରୋଡ଼ ଅଳଂକୃତ କରିଥିଲେ । ୨୮ ବର୍ଷ ବୟସରେ ପ୍ୟାରୀମୋହନଙ୍କ ପିତୃ ବିୟୋଗ ହେଲା । ସେ ପିତାଙ୍କୁ ହରାଇ ଅତ୍ୟନ୍ତ ମ୍ରିୟମାଣ ହୋଇଥିଲେ । ଯାହାହେଉ, ସ୍ୱର୍ଗତ ପିତାଙ୍କ ଆଦେଶ ଶିରୋଧାର୍ଯ୍ୟ କରି ସେ ନିଜର କନିଷ୍ଠ ଭ୍ରାତା ଶ୍ରୀଯୁକ୍ତ ଗୋପୀମୋହନଙ୍କୁ ଲାଳନପାଳନ ଏବଂ ଶିକ୍ଷିତ କରିବାକୁ ଲାଗିଲେ । ତାହାଙ୍କ ଯତ୍ନରେ ଗୋପୀମୋହନ ପରବର୍ତ୍ତୀ କାଳରେ କଟକ କଲେକ୍ଟରଙ୍କ ସୁଦକ୍ଷ ଲୋକପ୍ରିୟ ଶେରସ୍ତାଦାର ରୂପେ ପିତାଙ୍କ ସ୍ଥାନ ଅଧିକାର କରିଥିଲେ ।

ପ୍ୟାରୀମୋହନଙ୍କ ମାତା, ସ୍ତ୍ରୀ, ପୁତ୍ର, ଭାଇ ଭଗିନୀ ଏବଂ ଭ୍ରାତୁଷ୍ପୁତ୍ର ଓ ଭ୍ରାତୁଷ୍ପୁତ୍ରୀମାନଙ୍କୁ ଘେନି ଯେପରି ଭାବରେ ଜୀବନଯାପନ କରିବାକୁ ଲାଗିଲେ, ସେଥିରେ ସ୍ୱର୍ଗତ ଜନାର୍ଦ୍ଦନଙ୍କ ଅଭାବ ପୋଷ୍ୟବର୍ଗ ଶୀଘ୍ର ବିସ୍ମୃତ ହେଉ ଥିଲା । ଏହି ସଂସାର ଯାତ୍ର ନିର୍ବାହରେ ସ୍ୱାର୍ଥତ୍ୟାଗ ତାହାଙ୍କ ମୂଳମନ୍ତ୍ର ଥିଲା । ତାହାଙ୍କ ସନ୍ତାନ ୪ ଗୋଟି, ତନ୍ମଧ୍ୟରୁ ଗୋପୀମୋହନଙ୍କ ଅର୍ଥାର୍ଜ୍ଜନ ସମୟରେ ତିନୋଟି କନ୍ୟା ବିବାହିତ ହୋଇଥିଲେ, ସୁତରାଂ ଏକମାତ୍ର ପୁତ୍ରକୁ ଶିକ୍ଷାଦାନ ବ୍ୟତୀତ ତାହଙ୍କର ଅନ୍ୟ

କୌଣସି ଗୁରୁଦାୟିତ୍ୱ ନଥିଲା । ଗୋପୀମୋହନଙ୍କ ପାଞ୍ଚଗୋଟି କନ୍ୟା ଓ ଏକ ମାତ୍ର ପୁତ୍ର ଜାତ ହୋଇଥିଲେ । ତେଣୁ ଜ୍ୟେଷ୍ଠ ଭ୍ରାତା କଦାପି ତାହାଙ୍କୁ ସଂସାରଯାତ୍ରା ନିର୍ବାହରେ ସାହାଯ୍ୟ କରିବାକୁ କହୁନଥିଲେ । ଯେତେବେଳେ ଗୋପୀମୋହନ କଲେକ୍ଟର ସାହେବଙ୍କ ହେଡ଼୍ କ୍ଲାର୍କ ବା ପ୍ରଧାନ କିରାନୀ, ସେତେବେଳେ ଦିନେ ସେ ସଂସାରିକ ବ୍ୟୟ ନିମିତ୍ତ ଆଂଶିକ ସାହାଯ୍ୟ ଦେବାର ପ୍ରସ୍ତାବ କଲେ । ସେ ପ୍ରସ୍ତାବ ଶୁଣି ଶ୍ରୀରାମଚନ୍ଦ୍ର କଳ୍ପ ଅଗ୍ରଜ ପ୍ୟାରୀମୋହନ କହିଲେ, "ଗୋପି, ତୋର ଅନେକ ଝିଅ, ସେମାନଙ୍କର ବିବାହ ହୋଇନାହିଁ । ତୁ ଟଙ୍କା ରଖ । ମୁଁ ତ ସଂସାର ଖର୍ଚ୍ଚ ଚଳାଇ ଦେଉଛି; ତୋର ଏତେ ଭାବନା କାହିଁକି ?" ଗୋପୀମୋହନ ତାହା ଶୁଣି ନୀରବ ରହିଲେ । ଯେଉଁ ଯୁଗରେ ଭାଇ ଭଗାରି ଏବଂ ଅର୍ଥହିଁ ପରମାର୍ଥ ସେ ଯୁଗରେ ଜ୍ୟେଷ୍ଠ ଓ କନିଷ୍ଠଭ୍ରାତା ମଧ୍ୟରେ ଏପରି ବ୍ୟବହାର କଳ୍ପନାର ବିଷୟ ନୁହେଁ କି ?

ଆମ୍ଭେମାନେ ଜ୍ୟେଷ୍ଠଭ୍ରାତଙ୍କ ପ୍ରୋକ୍ତ ବ୍ୟବହାରର ଫଳ ସ୍ୱରୂପ ଏଠାରେ ଆଉ ଗୋଟିଏ ଘଟଣାର ଉଲ୍ଲେଖ ନ କରି ରହିପାରୁ ନାହୁଁ । କେହି ଭାତୃଭକ୍ତ ଲକ୍ଷ୍ମଣଙ୍କ ପରି ଅନୁଜର ଆକାଙ୍‌କ୍ଷା କଲେ, ତାହାଙ୍କୁ ରାମଙ୍କ ପରି ଅଗ୍ରଜ ହେବା ଆବଶ୍ୟକ । ପ୍ୟାରୀମୋହନ ରାମଙ୍କ ପରି ଆଗ୍ରଜ ଥିଲେ ବୋଲି ଲକ୍ଷ୍ମଣଙ୍କ ପରି ଅନୁଜ ଲାଭ କରିଥିଲେ । ଗୋଟିଏ ଦୃଷ୍ଟାନ୍ତରୁ ଆମ୍ଭମାନଙ୍କ ମନ୍ତବ୍ୟ ସୁସ୍ପଷ୍ଟ ହେବ । ପ୍ୟାରୀମୋହନଙ୍କ ତିରୋଧାନ ପରେ ଗୋପୀମୋହନ ବର୍ତ୍ତମାନ ଥାନ୍ତି । ଗୋପୀମୋହନଙ୍କ ଏକମାତ୍ର ରୁଗ୍ଣ ପୁତ୍ର ଧରି ବସିଲେ ଯେ ସେ ଚିରପୀଡ଼ିତ, ତେଣୁ ଚାକିରି କରି ପାରିବେ ନାହିଁ; ଅତଏବ କିଛି ଅଧିକା ଜମି ତାହାଙ୍କ ନାମରେ ଲେଖି ନ ଦେଲେ ସେ କଦାପି ବିବାହ କରିବେ ନାହିଁ । ବର୍ତ୍ତମାନ ଜ୍ୟେଷ୍ଠଭ୍ରାତା ସ୍ୱର୍ଗତ । ତାହାଙ୍କ ପୁତ୍ର ଭୁବନମୋହନ ପ୍ରତି ତାହାଙ୍କ ପୁତ୍ରସ୍ନେହ । ଭୁବନମୋହନ କୃତବିଦ୍ୟ ଓ ଅର୍ଥାର୍ଜ୍ଜନକ୍ଷମ ହେଲେ ମଧ୍ୟ, ଗୋପୀମୋହନ କିପରି ତାହାଙ୍କୁ ବଞ୍ଚିତ କରି ନିଜପୁତ୍ର ନାମରେ ଅଧିକ ଜମି କ୍ରୟ କରିବେ ? ଏଣେ ତାଙ୍କ ସ୍ତ୍ରୀ ଅଧିକ ଜମି ପୁତ୍ର ପାଇଁ କିଣି ଦେବା ସକାଶେ ସ୍ୱାମୀଙ୍କୁ ସନିର୍ବନ୍ଧ ଅନୁରୋଧ କରିବାକୁ ଲାଗିଲେ । ଗୋପୀମୋହନ କିନ୍ତୁ ଅଟଳ ଅଟଳ । ସେ ଦିନକୁ ଦିନ ବୃଦ୍ଧ ହେଉ ଅଛନ୍ତି, ପୁତ୍ର ମଧ୍ୟ ତାହାର ସଂକଳ୍ପ ପରିତ୍ୟାଗ କରୁନାହିଁ । ପୁତ୍ରର ଦାବୀ ରକ୍ଷା ପାଇଁ ବନ୍ଧୁ ବାନ୍ଧବମାନେ ମଧ୍ୟ ଗୋପୀମୋହନଙ୍କୁ ବହୁ ଅନୁରୋଧ କଲେ; ସେ କିନ୍ତୁ କାହାରି ଅନୁରୋଧ ପ୍ରତି କର୍ଣ୍ଣପାତ କଲେ ନାହିଁ ।

ସ୍ୱର୍ଗତ ଜ୍ୟେଷ୍ଠଭ୍ରାତାଙ୍କ ପ୍ରତି ଅନ୍ୟାୟ ଆଚରଣ ହେବେ ଓ ଭୁବନମୋହନ ପ୍ରତି ଅନ୍ୟାୟ ଆଚରଣର ଆଶଙ୍କାରେ ସେ ସ୍ଥିତପ୍ରଜ୍ଞବତ୍ କାର୍ଯ୍ୟ କଲେ । ଅବଶେଷରେ ସେ ଇହଧାମର ବିଦାୟ ନେଲେ, କିନ୍ତୁ ଯେଉଁ କାର୍ଯ୍ୟ ଦ୍ୱାରା ତାହାଙ୍କ ଯଥାର୍ଥ ଅନୁଜଦ୍ୱ ଉପରେ ବାଧା ପଡ଼ିଥାନ୍ତା ବୋଲି ସେ ଭୟ କରିଥିଲେ, ତାହା କଦାପି କରି ପାରିଲେ ନାହିଁ । ଏକମାତ୍ର ପୁତ୍ରର ବିବାହୋତ୍ସବ ଦେଖିବାରଲାଳସା ମଧ୍ୟ ପରିତ୍ୟାଗ କରି ସେ କର୍ତ୍ତବ୍ୟ ପଥରୁ ତିଳେମାତ୍ରବିଚଳିତ ହେଲେ ନାହିଁ । ଏଥିପାଇଁ ଆମ୍ଭେମାନେ କହିଅଛୁ, ଅଗ୍ରଜ ରାମପରି ହେଲେ ଅନୁଜ ଲକ୍ଷ୍ମଣବତ୍ ନ ହୋଇ ରହି ପାରିବେ ନାହିଁ ।

ଯୌବନର ଉଦ୍ଦାମ ଆବେଗ ପ୍ୟାରୀମୋହନଙ୍କୁ ଦିନକ ପାଇଁ ମଧ୍ୟ ମହାଜନ ପ୍ରଦର୍ଶିତ ପନ୍ଥାରୁ ବିଚଳିତ କରିପାରି ନାହିଁ । ଆମ୍ଭେମାନେ ତାହାଙ୍କ ଚରିତ୍ର ସମ୍ବନ୍ଧରେ କହିବାବେଳେ ପ୍ରୋକ୍ତ ବିଷୟରେ ବିଶିଷ୍ଟ ଭାବରେ ଆଲୋଚନା କରିବୁଁ ।

( ୨ )

ବର୍ତ୍ତମାନ ପ୍ୟାରୀମୋହନଙ୍କ କର୍ମକ୍ଷେତ୍ର ସମ୍ବନ୍ଧରେ କେତେ କଥା କହିବାକୁ ହେବ । ଏଫ୍, ଏ, ପାସ୍ କରିବା ପରେ କୌଣସି ଉଚ୍ଚତର ଶିକ୍ଷାର ସୁଯୋଗ ନପାଇ ପିତାଙ୍କ ନିର୍ଦ୍ଦେଶରେ ସେ ବର୍ତ୍ତମାନ ଅର୍ଥାଗମର ଉପାୟ ଅନ୍ୱେଷଣ କରିବାକୁ ଲାଗିଲେ । ସେ ଆବାଲ୍ୟ ସାଧୁ ପ୍ରକୃତିକ, ତହୁଁ ଶିକ୍ଷା ବିଭଗକୁ ପବିତ୍ର ମଣି ତହିଁରେ ପ୍ରବେଶ କରିବେ ବୋଲି ସ୍ଥିର କଲେ । ପ୍ରଥମତଃ ସେ ଅସ୍ଥାୟୀ ଭାବରେ କିଛିକାଳ ପାଇଁ କଟକ ଜିଲ୍ଲା ସ୍କୁଲ ଆଧୁନିକ (ରେଭେନ୍‌ସା କଲିଜିୟେଟ୍ ସ୍କୁଲ)ର ସହକାରୀ ଶିକ୍ଷକ ରୂପେ କାର୍ଯ୍ୟ କଲେ ।

ପ୍ୟାରୀମୋହନ ଅର୍ଥ ଉପାର୍ଜନ କଲେ ସତ୍ୟ; କିନ୍ତୁ ପିତା ପୁତ୍ରର ଅର୍ଜିତ ଅର୍ଥ ନିଜେ ବ୍ୟୟ ନକରି ତାର ନାନାବିଧ ଅଭାବ ମୋଚନରେ ତାହାର ବ୍ୟୟ କରିବାକୁ ଆଦେଶ କଲେ । ପ୍ୟାରୀମୋହନ ନିଜର ଆବଶ୍ୟକ ବହୁ ପଦାର୍ଥ ମଧ୍ୟରେ ଗୋଟିଏ ଘଡ଼ି କିଣିଲେ । ସେତେବେଳେ ଘଡ଼ି ଗୋଟିଏ ଦୁର୍ଲ୍ଲଭ ବସ୍ତୁ । ସେ ଘଡ଼ି ଘର ଭିତରକୁ ଆସିବା ମାତ୍ରେକେ ଘରର ଲୋକେ ତାହା ଦେଖିବାକୁ ଦଉଡ଼ି ଆସିଲେ- କାରଣ ଇତି ପୂର୍ବେ ସେମାନେ ଘଡ଼ି ଦେଖି ନ ଥିଲେ । ବୋଲିବା ବାହୁଲ୍ୟ ଯେ ଟ ୧ ୫ ୦ ୯ ମୂଲ୍ୟରେ ଏହି ଘଡ଼ି କ୍ରୟ କରିଥିଲେ । ପ୍ୟାରୀବାବୁଙ୍କ ଅର୍ଥପିତାଙ୍କ

ଅନୁମତିରେ ଏପରି ଭାବରେ ବ୍ୟୟିତ ହେବା ସମୟରେ ପିତା ଅକସ୍ମାତ ଇହଧାମ ପରତ୍ୟାଗ କଲେ । ତେଣୁ ନିଜର ଅର୍ଥଦ୍ୱାରା ପିତଙ୍କ ସେବା କରି ନ ପାରି ପ୍ୟାରିମୋହନ ଭବିଷ୍ୟତରେ ବହୁବାର ଦୁଃଖ ପ୍ରକାଶ କରିଥିଲେ ।

ଯାହା ହେଉ ୧୮୬୮ ସାଲର ଜାନୁୟାରୀ ମାସ ୨ ତରିଖରେ ସେ ସ୍ଥାୟୀ ଭାବରେ ଶିକ୍ଷା ବିଭାଗରେ ଭର୍ତ୍ତି ହେଲେ । କିଛି ଦିନ କାର୍ଯ୍ୟ କରିବା ପରେ ଢେଙ୍କାନାଳର ବର୍ତ୍ତମାନ ନରପତିଙ୍କ ପିତାମହ ଶ୍ରୀ ଶ୍ରୀ ଦୀନବନ୍ଧୁ ମହୀନ୍ଦ୍ର ବାହାଦୂରଙ୍କ ଗୃହ ଶିକ୍ଷକ ରୂପେ ୧୮୮୪ ସାଲରେ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ ; କିନ୍ତୁ ସେ ଯୁବରାଜ ଅବସ୍ଥାରେ ମରିଯିବାରୁ ପ୍ୟାରୀବାବୁ କିଛିକାଳ ପରେ ନିଜ କାର୍ଯ୍ୟକୁ ବାହୁଡ଼ି ଆସିଲେ । ଆଜି ପର୍ଯ୍ୟନ୍ତ ଢେଙ୍କାନାଳର ପ୍ରାଚୀନ ଲୋକମାନେ ପ୍ୟାରୀବାବୁଙ୍କୁ ଭକ୍ତି ଓ ଶ୍ରଦ୍ଧା ସହିତ ସ୍ମରଣ କରୁଅଛନ୍ତି ।

ବର୍ତ୍ତମାନ ସେ ଶିକ୍ଷାଦାନ ଛାଡ଼ି ଶିକ୍ଷା ପରିଦର୍ଶନର ଭାର ଗ୍ରହଣ କଲେ । ୧୮୮୬ ସାଲରେ ଫେବୃୟାରୀ ମାସ ୨୧ ତାରିଖରେ ତାହାଙ୍କ ଗେଜେଟେଡ୍ ସର୍ଭିସ୍ ବା ଶିକ୍ଷା ବିଭାଗର ବଡ଼ ଚାକିରୀ ଆରବ୍ଧ ହେଲା । ଇତିପୂର୍ବେ ସେ ଉତ୍କଳର ପ୍ରୟ ସମସ୍ତ ଜିଲ୍ଲାର ସ୍କୁଲ ବିଭାଗର ଡେପୁଟି ଇନ୍‌ସିପେକ୍ଟର ରୂପେ କାର୍ଯ୍ୟ କରିଥିଲେ । ଅତଃପର ପୁରୀ ଓ କଟକର ଡେପୁଟି ଇନ୍‌ସିପେକ୍ଟର ରୂପେ ତାହାଙ୍କୁ କାର୍ଯ୍ୟ କରିବାକୁ ହୋଇଥିଲା । ସେ ୧୮୯୧ ସାଲ ନଭେମ୍ବର ମାସର ୧୨ ତାରିକରୁ ୧୮୯୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କଟକ ଜିଲ୍ଲାର ଉକ୍ତ କାର୍ଯ୍ୟ କରି କାର୍ଯ୍ୟରୁ ଅବସର ଗ୍ରହଣ କଲେ ।

କାର୍ଯ୍ୟକ୍ଷେତ୍ରରେ ପ୍ୟାରୀମୋହନ ଯେପରି କର୍ତ୍ତବ୍ୟନିଷ୍ଠା, ନ୍ୟାୟପରତା ନିର୍ଲୋଭତା ଏବଂ ନିର୍ଭିକତାର ଦୃଷ୍ଟାନ୍ତ ଦେଖାଇ ଅଛନ୍ତି, ତାହା ଅନନ୍ୟସାଧାରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୮୭୨--୭୩ ସାଲର ଶିକ୍ଷା ବିଭାଗର ସାଧାରଣ ବିବରଣୀର ୩୩୩ ପୃଷ୍ଠାରେ ଦେଖାଯାଏ ଯେ, ଓଡ଼ିଶାର ତଦାନୀନ୍ତନ ସ୍କୁଲ ବିଭାଗର ଇନ୍ସିପେକ୍ଟର ମହୋଦୟ ଶିକ୍ଷାବିଭାଗସ୍ଥ ଓଡ଼ିଶାର ସୁଦକ୍ଷ କର୍ମଚାରୀମାନଙ୍କ ନାମ ଉଲ୍ଲେଖ କରିଅଛନ୍ତି । ତତ୍ ସହିତ ତଦାନୀନ୍ତନ ଓଡ଼ିଶାର ସ୍ୱନାମଧନ୍ୟ କମିଶନର ରେଭେନଶା ସାହେବ ☎Mr. Ravenshaw 1870-1875) ଲେଖିଛନ୍ତି "To these i would add the name of Baboo Peaarymohan Sen, Deputy Inspector of Cuttuck" ମୁଁ ଏହିମାନଙ୍କ ସୁଦକ୍ଷ କର୍ମଋରୀଙ୍କ ନାମ ସମୂହ ସହିତ କଟକର ଡେପୁଟି

ଇନସପେକ୍ଟର ବାବୁ ପ୍ୟାରୀମୋହନ ସେନ୍‌ଙ୍କ ନାମ ଯୋଗ କରିବାକୁ ଇଚ୍ଛା କରେଁ । ପୁଣି ଆମ୍ଭେମାନେ ବିଭିନ୍ନ ବର୍ଷର ଶିକ୍ଷା ସମ୍ବନ୍ଧୀୟ ସାଧାରଣ ବିବରଣୀମାନ ପାଠ କରି ଦେଖିଅଛୁଁ ଯେ ସେ ନିରଳସଭାବରେ ସ୍କୁଲ ପରିଦର୍ଶନ କାର୍ଯ୍ୟ କରୁଥିଲେ । ଅନ୍ୟାନ୍ୟ ଡେପୁଟି ଇନ୍‌ସପେକ୍ଟରଙ୍କ ତୁଳନାରେ ତାହାଙ୍କ ପରିଦର୍ଶନର ଦିବସ ସଂଖ୍ୟା ପ୍ରାୟ ଅଧିକ ଥିଲା । ସେଥିରୁ କାର୍ଯାକ୍ଷେତ୍ରରେ ପ୍ୟାରୀମୋହନଙ୍କ କର୍ତ୍ତବ୍ୟନିଷ୍ଠା କିଞ୍ଚିତ୍ ଅନୁମେୟ ।

କୌଣସି ସମୟରେ ତାହାଙ୍କ ଅଧୀନରେ ଜଣେ ଶିକ୍ଷକର ପ୍ରୟୋଜନ ପଡ଼ିଲା । ତାହାଙ୍କର କୌଣସି ଉପରିସ୍ଥ କର୍ମଚାରୀ ଜନୈକ ପାର୍ଥୀନିମିତ୍ତ ପ୍ୟାରୀବାବୁଙ୍କୁ ଅନୁରୋଧ କରି ପତ୍ର ଲେଖିଥିଲେ । ଏ ଘଟଣାର ୨/୩ ଦିନ ପରେ ଉକ୍ତ ଉପରିସ୍ଥ କର୍ମଚାରୀ ଆଉ ଜଣେ ପାର୍ଥୀଙ୍କ ପାଇଁ ଅନୁରୋଧ ସୂଚକ ପତ୍ର ଲେଖିଥିଲେ । ପ୍ୟାରୀବାବୁ ଏହି ଦୁଇଖଣ୍ଡ ପତ୍ର ପାଇ କହିଲେ 'ଖଣ୍ଡିଏ ଚାକିରୀ ପାଇଁ ଦୁଇ ଜଣଙ୍କୁ ନିଯୁକ୍ତ କରାଯାଇ ନ୍‌ପାରେ । ଜଣକ ସକାଶେ ଲେଖି ପୁଣି ଆଉ ଜଣଙ୍କ ସକାଶେ ଲେଖିବା ହେତୁ ମୁଁ କାହାରି ପ୍ରତି ସନ୍ତୁଷ୍ଟ ହୋଇ ପାରିଲି ନାହିଁ ।' ଏହା କହି ସେ ଉଲ୍ଲିଖିତ ଦୁଇଜଣଙ୍କ ମଧ୍ୟରୁ କାହାରିକି ଉକ୍ତ ଚାକିରୀ ନ ଦେଇ ତୃତୀୟ ବ୍ୟକ୍ତିଙ୍କୁ ନିଯୁକ୍ତ କଲେ । ଉପରିସ୍ଥ କର୍ମଚାରୀଙ୍କ ଭୟ ତାହାଙ୍କୁ ନିଜ ଧାରଣାରୁ ବିଚ୍ୟୁତ କରି ପାରି ନାହିଁ ।

ଦିନେ ପ୍ୟାରୀମୋହନ ଗସ୍ତରେ ବାହାରିଛନ୍ତି । ରାଜମାର୍ଗରେ ଗୋଟିଏ ବୃକ୍ଷର ଶାଖା ତାହାଙ୍କ ଗାଡ଼ିରେ ଲାଗି ଭାଙ୍ଗିଗଲା । ଏହି ବୃକ୍ଷଠାରୁ ଥାନା ବହୁ ଦୂରବର୍ତ୍ତୀ । ସେ ଉକ୍ତ ଭଗ୍ନ ଶାଖା ଖଣ୍ଡିକ ଗାଡ଼ିରେ ଲଦି ଥାନାକୁ ନେଇଗଲେ । ଥାନାର କର୍ତ୍ତୃପକ୍ଷମାନେ ପ୍ୟାରୀବାବୁଙ୍କ ଭଳି ଜଣେ ଉଚ୍ଚକର୍ମଚାରୀଙ୍କ ଏବମ୍ବିଧ ଆଚରଣ ଦେଖି ବିସ୍ମିତ ହୋଇ କହିଲେ , "ଖଣ୍ଡିଏ ଡାଳ ଗାଡ଼ିରେ ଲାଗି ଭାଙ୍ଗିଗଲା; ଆପଣ ଇଚ୍ଛା କରି ତାହା ଭାଙ୍ଗି ନାହାନ୍ତି; ଆପଣ ଜଣେ ସରକାରୀ ଚାକର । ଆପଣ ଏହି ସାମାନ୍ୟ ଡାଳ ଖଣ୍ଡିକ ନେଇ ଥାନାକୁ ଆସିଲେ କାହିଁକି ? ପ୍ୟାରୀମୋହନ ଉତ୍ତର କଲେ ଦେଖ, ମୋର ଗାଡ଼ିବଲାର ଅସାବଧାନତା ଯୋଗୁଁ ଡାଳ ଖଣ୍ଡିକ ଭାଙ୍ଗିଗଲା ; ସୁତରାଂ ମୋର ଜୋରିମାନା ଦେବାର କଥା । " ଏହା କହି ଜୋରିମାନା ସ୍ୱରୂପ ଟ. ୦.୬ ଏବଂ ଉକ୍ତ ଶାଖା ଥାନାରେ ରଖି ଦେଇ ସେ ନିଶ୍ଚିନ୍ତ ମନରେ ଫେରି ଆସିଲେ । ଥାନାର କର୍ତ୍ତୃପକ୍ଷମାନେ ତାହାଙ୍କର ଏପରି ଆଚରଣ ଦେଖି ବିସ୍ମିତ

ହେଲେ ପାଠକ ପାଠିକା ଉପର୍ଯ୍ୟୁକ୍ତ ଉଦାହରଣରୁ ଆପଣମାନେ ତାହାଙ୍କ ନ୍ୟାୟପରତାର ଆଭାସ ପାଇ ପାରିବେ ।

ଆମ୍ଭେମାନେ କହିଅଛୁଁ ଯେ କାର୍ଯକ୍ଷେତ୍ରରେ ପ୍ୟାରୀମୋହନ ନିର୍ଲୋଭତାର ଯଥେଷ୍ଟ ପ୍ରମାଣ ଦେଇ ଅଛନ୍ତି । ଗୋଟିଏ ଦୁଇଟି ଘଟଣାରୁ ତାହା ପ୍ରମାଣିତ ହେବ । ଥରେ ଜନୈକ ଇନ୍‌ସପେକ୍ଟିଂ ପଣ୍ଡିତ ସୁଗନ୍ଧ ସରୁଚାଉଳ ଏବଂ ପ୍ରଚୁର ଗବ୍ୟଘୃତର ଭାର ଘେନି ପ୍ୟାରୀମୋହନଙ୍କ କଟକସ୍ଥନିବାସରେ ଉପସ୍ଥିତ । ସେତେବେଳେ ଦିନ ଦ୍ୱିପ୍ରହର--ପ୍ୟାରୀବାବୁ ଭୋଜନ ସାରି ଟିକିଏ ବିଶ୍ରାମ କରୁ ଅଛନ୍ତି । ଚାକରମାନେ ଉକ୍ତ ଦ୍ରବ୍ୟମାନ ବାବୁଙ୍କ ବିନାନୁମତିରେ ଗୃହକୁ ନେବା ପାଇଁ ଶଙ୍କିତ ହେଉଥିଲେ । ମାତ୍ର ପଣ୍ଡିତ ମହାଶୟଙ୍କ ନିର୍ବନ୍ଧାତିଶଯ୍ୟରେ ସେମାନେ ଘେନିଗଲେ । ଘୃତପାତ୍ର ଗୃହ ଭିତରକୁ ଆଣିବା ର ଅଳ୍ପକ୍ଷଣ ପରେ ପ୍ୟାରୀବାବୁଙ୍କର ତନ୍ଦ୍ରା ଭାଙ୍ଗିଗଲା । ସେ ଉକ୍ତ ପଦାର୍ଥମାନ ଦେଖି ଅତ୍ୟନ୍ତ କ୍ରୋଧାନ୍ୱିତ ହେଲେ । ସେ ଚାକରମାନଙ୍କ ଉପରେ ଏପରି ଗୋଟାଏ ଗର୍ଜନ କଲେ ଯେ, ସେମାନେ ତତ୍‌କ୍ଷଣାତ୍ ଉକ୍ତ ଜିନିଷମାନ ପଣ୍ଡିତଙ୍କ ନିକଟକୁ ଫେରାଇ ଆଣିଲେ । ପଣ୍ଡିତ ମହୋଦୟବିପଦ ଗଣିବାକୁ ଲାଗିଲେ । କିଛିକ୍ଷଣ ପରେ ପ୍ୟାରୀମୋହନ ତାହାଙ୍କ ପାଖକୁ ଆସି ତାହାଙ୍କୁ ପଚାରିଲେ, "ଆପଣ ଏହି ଉତ୍କୋଚ ଦାନ ନିମିତ୍ତ ସରକାରୀ କାର୍ଯ୍ୟରୁ କାହିଁକି ବରଖାସ୍ତ ନ ହେବେତାହାର କୈଫିୟତ ଦିଅନ୍ତୁ ।" ଆପାଦମସ୍ତକ-କମ୍ପିତ-କଳେବର ପଣ୍ଡିତ ମହୋଦୟ ସ୍ୱକୃତ ଅପରାଧ ନିମିତ୍ତ କ୍ଷମାଭିକ୍ଷା କରି ଆଉ ଏପରି ଆଚରଣ କଦାପି କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ । ବାବୁ ମହୋଦୟ ପଣ୍ଡିତଙ୍କୁ କ୍ଷମା ଦେଇ ତଣ୍ଡୁଳ ଓ ଘୃତ ସହିତ ବିଦାୟ ଦେଲେ ।

ଆଉ ଥରେ ପ୍ୟାରୀବାବୁ ପୁରୀରେ ଡେପୁଟି ଇନ୍‌ସପେକ୍ଟର ଥିବା ସମୟରେ ଇନ୍‌ସପେକ୍ଟର କବିବର ରାଧାନାଥ ସେଠାକୁ ଯାଇଥାନ୍ତି । ଦୁହେଁ ଏକତ୍ର ଥାନ୍ତି । ଜନୈକ ସଂସ୍କୃତ ଉପାଧିଧାରୀ ପଣ୍ଡିତ ପ୍ରାୟ ଟ ୨(ମୂଲ୍ୟର ପଇଡ଼ ଉଭୟଙ୍କୁ ଦିନ ଦ୍ୱିପ୍ରହର ବେଳେ ଉପହାର ଦେଇ ଆସିଲେ । ପ୍ୟାରୀବାବୁ ଏକାଥିଲେ ତାହା ତତ୍‌କ୍ଷଣାତ୍ ଫେରାଇ ଦେଇଥାନ୍ତେ; ମାତ୍ର କାଳେ ଉକ୍ତ ଦ୍ରବ୍ୟ ତାହାଙ୍କ ଉପରିସ୍ଥ କର୍ମଚାରୀଙ୍କୁ ପ୍ରଦତ୍ତ ହୋଇଥିବ ଭାବି ସେ ନୀରବ ରହିଲେ । କିଛିକ୍ଷଣ ପରେ ରାଧାନାଥଙ୍କ ଅନୁରୋଧ କ୍ରମେ ସେହି ପଇଡ଼ରୁ ସେ ଗୋଟିଏ କି ଯୋଡ଼ିଏ ଖର୍ଚ୍ଚ କଲେ । ସନ୍ଧ୍ୟା ସମୟରେ ପ୍ୟାରୀବାବୁ ଟ ୨(ମୂଲ୍ୟର ଉତ୍କୃଷ୍ଟ ବଡ଼ ମାଛ ଆପଣାର ଭୃତ୍ୟ ହସ୍ତରେ

ଘେନି ପଣ୍ଡିତଙ୍କ ଗୃହରେ ଉପସ୍ଥିତ । ପଣ୍ଡିତେ ପ୍ୟାରୀବାବୁଙ୍କୁ ମତ୍ସ୍ୟ ସହିତ ଦେଖି ବିସ୍ମିତ ହେଲେ ଓ ସବୁ କଥା ବୁଝିପାରି କହିଲେ, "ଆଜ୍ଞା ମୋ ବାଡ଼ିରୁ ପଇଡ଼ ତୋଳି ମୁଁ ଆପଣମାନଙ୍କୁ ଦେଇଥଲି । ଆପଣ ସେଥିପାଇଁ ହାତରୁ ପଇସା ଖର୍ଚ୍ଚ କରି ମୋତେ ଏତେ ଗୁଡ଼ିଏ ମାଛ ଦେଲେ କାହିଁକି ?" ପ୍ୟାରୀବାବୁ ଉତ୍ତର କଲେ , " ଆପଣ ଯେପରି ଆପଣଙ୍କ ବାଡ଼ିରୁ ପଇଡ଼ ତୋଳି ଦେଲେ, ମୁଁ ସେହିପରି ମୋ ପଇସାରୁ ମାଛ କିଣି ଦେଲି । ସେଥିପାଇଁ ଆପଣଙ୍କ ଚିନ୍ତା କରିବାର କୌଣସି କାରଣ ନାହିଁ ।" ଏହା କହି ବାବୁ ମହୋଦୟ ସାନୁଚର ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ପ୍ୟାରୀମୋହନ ମତ୍ସ୍ୟପ୍ରିୟ ଥିଲେ । ଥରେ ସେ ଗସ୍ତରେ ଥିବା ସମୟରେ ତାହାଙ୍କର ଭୃତ୍ୟ ବହୁ ଅନ୍ୱେଷଣ କରି ମାଛ କେଉଁଠାରୁ ପାଇଲା ନାହିଁ । ବାବୁ ଭୃତ୍ୟ ସହ ରାସ୍ତାରେ ଆସୁଅଛନ୍ତି, ଏପରି ସମୟରେ ଭୃତ୍ୟ ଦେଖିଲା ଯେ, ପଥପାର୍ଶ୍ୱରେ କ୍ଷୁଦ୍ର ଜଳସ୍ରୋତ ଚାଲିଅଛି । କିଛି ଦୂର ଆସିବା ପରେ ସେ ଦେଖିଲା ଯେ, ଏକ ସ୍ଥାନରେ କେହି ମାଛ ଧରିବା ପାଇଁ ସ୍ରୋତମୁଖରେ ଗୋଟିଏ ଖଇଞ୍ଚି ମଡ଼ାଇ ଯାଇଅଛି । ସେ ସେହି ଖଇଞ୍ଚି ପାଖକୁ ଯାଇ ଦେଖିଲା ଯେତାହା ମଧ୍ୟରେ ମାଛ ପଡ଼ିଛନ୍ତି । ସେ ସେହି ମାଛତକ ଆଣି ବାବୁଙ୍କୁ ଦେଖାଇଲା । ବାବୁ ପରର ଦ୍ରବ୍ୟ ଦେଖି ବିରକ୍ତ ହେଲେ । ପରେ ମାଛର ମୂଲ୍ୟ ଟ.୦ ୯ ହେବ ସ୍ଥିର କରି ତାହାର ଦ୍ୱିଗୁଣ ଅର୍ଥାତ୍ ଟ.୦ ୬ ସେହି ଖଇଞ୍ଚିରେ ରଖି ଆସିଲେ । ଭୃତ୍ୟ ଓ ସହଚରମାନେ ଏହା ଦେଖି ମୁଗ୍ଧ ହେଲେ ।

ବର୍ତ୍ତମାନ ସ୍ୱାଧୀନଚେତା ପ୍ୟାରୀମୋହନଙ୍କ ନିର୍ଭୀକତା ସମ୍ବନ୍ଧରେ ଆଉ ପଦେ ଅଧେ କହିବାକୁ ହେବ । ବାଲେଶ୍ୱର ଜିଲ୍ଲାରେ ଡେପୁଟି ଇନ୍‌ସପେକ୍ଟର ଥିବା ସମୟରେ ଲକ୍ଷ୍ମଣନାଥ ନିକଟବର୍ତ୍ତୀ ଦେହୁତଡ଼ା ମି: ଇ: ସ୍କୁଲ କରିଦର୍ଶନ କରିବାକୁ ଯାଇଥିଲେ । ଲକ୍ଷ୍ମଣନାଥର ତଦାନୀନ୍ତନ ଜମିଦାର ଶ୍ରୀଯୁକ୍ତ କୈଳାସଚନ୍ଦ୍ର ରାୟ ତାହାଙ୍କ ଆଗମନ ସମ୍ବାଦ ପାଇ ତାହାଙ୍କ ପାଇଁ ଚାଉଳ, ଡାଲି, କାଠ ପ୍ରଭୃତି ପଠାଇ ଦେଲେ । ବୋଲିବା ବାହୁଲ୍ୟ ଯେ, ପ୍ୟାରୀମୋହନ ସେ ସମସ୍ତ ତତ୍‌କ୍ଷଣାତ୍ ଫେରାଇ ଦେଲେ ।ଦୋର୍ଦ୍ଦଣ୍ଡ ପ୍ରତାପ ଜମିଦାର ମହୋଦୟ ଏ ସମ୍ବାଦ ପାଇ କ୍ରୋଧାନ୍ୱିତ ହେଲେ ଏବଂ ତାହାଙ୍କ ଜମିଦାରୀରେ ଆଦେଶ ପ୍ରଚାର କଲେ ଯେ, ପ୍ୟାରୀବାବୁଙ୍କୁ କେହି ଏକ ଛଦାମର ଜିନିଷବିକ୍ରୟ କରି ପାରିବେ ନାହିଁ । ପ୍ୟାରୀବାବୁ ଗସ୍ତକୁ ଯିବାବେଳେ ନିଜ ଗାଡ଼ିରେ ପ୍ରୟୋଜନୀୟ ଚାଉଳ, ଡଲି, ପରିବା ଓ ମସଲାଦି ସବୁ ରଖିଥାନ୍ତି, କେବଳ କାଠ କିଣି ବାକୁ ବାକି ଥାଏ । ସେ ସନ୍ଧ୍ୟାର ପ୍ରାକ୍

କାଳରେ ସେଠାରେ ପହଞ୍ଚିଥାନ୍ତି । ତେଣୁ ଜମିଦାର ମହୋଦୟଙ୍କ ଜିନିଷମାନ ଫେରାଇବା ପରେ କାଠ କିଣିବା ପାଇଁ ତାହାଙ୍କ ଭୃତ୍ୟକୁ ବଜାରକୁ ପଠାଇଲେ, କିନ୍ତୁ ଜମିଦାରଙ୍କ ଭୟରେ କେହି ତାହାଙ୍କୁ କାଠ ବିକ୍ରୟ କଲେ ନାହିଁ । ପ୍ୟାରୀମୋହନ ଉକ୍ତ ରାତ୍ରରେ ଉପବାସ ରହି ପରଦିନ ପ୍ରାତଃ କାଳରେ ଜମିଦାରଙ୍କ ଜମିଦାରୀର ବହିର୍ଦ୍ଦେଶସ୍ଥ ପ୍ରାୟ ପଞ୍ଚକ୍ରୋଶ ଦୂରବର୍ତ୍ତୀ ସ୍ଥାନରୁ କାଠ କିଣାଇ ଆଣି ରୋଷାଇ କରାଇଲେ, ତଥାପି ଜମିଦାରଙ୍କ ବଶ୍ୟତା ସ୍ୱୀକାର କଲେ ନାହିଁ ବା ତିଳେମାତ୍ର ତାହାଙ୍କୁ ଭୟ କଲେ ନାହିଁ ।

ପ୍ୟାରୀବାବୁଙ୍କ ମାନସିକ ବଳ ଯଥେଷ୍ଟ ଥିଲା । ତେଣୁ ପ୍ରବଳ ପ୍ରତାପ ଜମିଦାର ହୁଅନ୍ତୁ ବା ଉପରିସ୍ଥ କର୍ମଚାରୀ ହୁଅନ୍ତୁ, କାହାରି ଭୟରେ ସେ ନିଜର କର୍ତ୍ତବ୍ୟ ପଥରୁ ତିଳେମାତ୍ର ବିଚ୍ୟୁତ ହେଉ ନଥିଲେ । ତାହାଙ୍କର ଏହି ମାନସିକ ବଳର ଶତ ଶତ ଦୃଷ୍ଟାନ୍ତ ଅଛି ।

ରାଧାନାଥଙ୍କ ସୁଯୋଗ୍ୟ ଜ୍ୟେଷ୍ଠପୁତ୍ର ଶଶୀବାବୁ ଆମ୍ଭମାନଙ୍କୁ ଆଉ ଗୋଟିଏ ଘଟଣା କହି ପ୍ୟାରୀବାବୁଙ୍କ ମାନସିକ ଦୃଢ଼ତାର ସାକ୍ଷ ଦେଇ ଅଛନ୍ତି । ଦିନେ ପୁରୀ ଜିଲ୍ଲାନ୍ତର୍ଗତ ମିଞ୍ଜଙ୍ଗ ପାଟଣାର ଉପ୍ରା ସ୍କୁଲ ପରିଦର୍ଶନ କରି ସେଠାରୁ ୨ ୧ ମାଇଲ ଦୂରବର୍ତ୍ତୀ ଖୋର୍ଦ୍ଧା ସବ୍‌ଡିଭିଜନର ଛତାବର କୋଠିରେ ପ୍ୟାରୀବାବୁ ପହଞ୍ଚିଲେ । ତାହାଙ୍କ ଉପରିସ୍ଥ କର୍ମଚାରୀ ଇନିସ୍‌ପେକ୍ଟର ରାଧାନାଥ ସପୁତ୍ର ସେଠାରେ ବର୍ତ୍ତମାନ । ରାଧାନାଥ ପ୍ୟାରୀବାବୁଙ୍କୁ ଅନୁରୋଧ କରି କହିଲେ, "ପ୍ୟାରୀବାବୁ, ଆପଣ ଏତେବେଳେ ସ୍ୱତନ୍ତ୍ର ପାକର ଅୟୋଜନ ନକରି ଆମରି ବସାରେ ଭୋଜନ କରନ୍ତୁ- କାରଣ ଆପଣଙ୍କ ରୋଷାଇ ହେଉ ହେଉ ବିଳମ୍ବ ହୋଇଯିବ ।" ପ୍ୟାରୀବାବୁ କହିଲେ, "ଆଜ୍ଞା ମୁଁ ମୋର principle (ମୂଳମନ୍ତ୍ର) ଅନୁଯାୟୀ କାର୍ଯ୍ୟ କରିବି ଆପଣ ମୋତେ ଅନୁରୋଧ କରିବେ ନାହିଁ ।" ଏହା କହି ଦିନ ପ୍ରାୟ ବାରଟା ସମୟରେ ସେଠାରୁ ତିନି ମାଇଲ ଦୂରବର୍ତ୍ତୀ ଗଙ୍ଗପୋଡ଼ା କୋଠିକୁ ସେ ଚାଲିଗଲେ ଏବଂ ସେଠାରେ ପ୍ରାୟ ଦିନ ଦୁଇଟାବେଳେ ତାହାଙ୍କୁ ଆହାର ଯୁଟିଥିବ । ପ୍ୟାରୀବାବୁଙ୍କୁ ଏବମ୍ବିଧ ଆଚରଣ ଦେଖି ଏହି ଶ୍ଳୋକଟି ସ୍ୱତଃ ମନରେ ଉଦିତ ହୁଏ:-

"ନିନ୍ଦନ୍ତୁ ନିତି ନିପୁଣାଃ ଯଦି ବା ସ୍ତୁବନ୍ତୁ
ଲକ୍ଷ୍ମୀ ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟମ୍ ।

ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା
ନ୍ୟାଯ୍ୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ ।"

ଏହାଛଡ଼ା ପ୍ୟାରୀବାବୁ ଘୋର ସ୍ପଷ୍ଟବାଦୀ ଥିଲେ । ତାହାଙ୍କର ଏହି ସ୍ପଷ୍ଟବାଦିତା ନିମିତ୍ତ ତାହାଙ୍କ ସହିତ ସଂପୃକ୍ତ ଲୋକେ ତାହାଙ୍କୁ ଭୟ କରୁଥିଲେ । ଦିନେ ସାଲତମାମି କାର୍ଯ୍ୟ ହେଉଥିଲା । ଅଧସ୍ତନ ସ୍କୁଲ ସବ୍‌ଇନିସ୍‌ପେକ୍ଟରମାନେ ତାହଙ୍କୁ ବେଢ଼ି ବସିଥାନ୍ତି । ସଦା ଧୀରେ ଅଥଚ ନିରପେକ୍ଷ ପ୍ୟାରୀବାବୁ ସମସ୍ତଙ୍କୁ କାର୍ଯ୍ୟ ବିଷୟରେ ପରାମର୍ଶ ଦେଉ ଅଛନ୍ତି । ଇତ୍ୟବସରେ ଜନୈକ ସବ୍‌ଇନିସ୍‌ପେକ୍ଟର ତାହାଙ୍କ ଶ୍ରୁତିମୂଳରେ ନୀରବ ଭାବରେ କେତେକ ଭାବରେ କେତେକ କଥା କହିଲେ । ସେହି ସବ୍‌ଇନିସ୍‌ପେକ୍ଟର ବାବୁ ତାହାଙ୍କ ଆତ୍ମୀୟମାନଙ୍କ ମଧ୍ୟରୁ ଜଣେ; ମାତ୍ର ପ୍ୟାରୀବାବୁ ସେପରି କାନକୁହା କଥା ସହ୍ୟକରି ପାରିଲେ ନାହିଁ । ସର୍ବସମକ୍ଷରେ ସେ ତାହାଙ୍କୁ ଅପମାନ ସୂଚକ କଥା କହି ପନ୍ଦର ଦିନ ଯାଏ ତାହାଙ୍କ ସହିତ ବାକ୍ୟାଳାପ ବନ୍ଦ କଲେ । ସେ ବାବୁ ଲିଖିତ ଭାବରେ କ୍ଷମା ପ୍ରାର୍ଥନା କରିବାରୁ ପ୍ୟାରୀବାବୁ ତାହାଙ୍କୁ କ୍ଷମା ଦେଇ ବୁଝାଇ କହିଲେ, "କାର୍ଯ୍ୟ କ୍ଷେତ୍ରରେ ତୁମ୍ଭେ ଯେପରି ଜଣେ ସବ୍‌ଇନିସପେକ୍ଟର, ଅନ୍ୟାନ୍ୟ ସବ୍‌ଇନିସପେକ୍‌ଟର ସେହିପରି : ମୋତେ କେବେ ହେଁ କୌଣସି ଗୁପ୍ତକଥା କହିବ ନାହିଁ ।" ପାଠକ ପାଠିକା ଏଥିରୁ ବାବୁ ମହୋଦୟଙ୍କ ସ୍ପଷ୍ଟବାଦିତା ସହିତ ନିରପେକ୍ଷତା ପ୍ରଭୃତି ଅନ୍ୟାନ୍ୟ ଗୁଣର ମଧ୍ୟ ସଙ୍କେତ ପାଇ ପାରିବେ ।

ତାହାଙ୍କ କାର୍ଯ୍ୟ କାଳରେ ସେ ଅନେକ ଗ୍ରାମବାସୀଙ୍କୁ ଉତ୍ସାହିତ କରି ପ୍ରାଥମିକ ବିଦ୍ୟାଳୟମାନ ପ୍ରତିଷ୍ଠିତ କରିଥିଲେ । ତାହାଙ୍କ ବିଦ୍ୟାଳୟ ପରିଦର୍ଶନ ରୀତି ଚିତ୍ତାକର୍ଷକ ଥିଲା । ଅଳ୍ପକ୍ଷଣ ମଧ୍ୟରେ ଛାତ୍ରମାନଙ୍କ ମନ କଳି ସେ ଏପରି ଭାବରେ ପ୍ରଶ୍ନ କରୁଥିଲେ ଯେ, ତଦ୍ୱାରା ଛାତ୍ରମାନଙ୍କ ଯୋଗ୍ୟତା ଉତ୍ତମରୂପେ ଜଣା ପଡୁଥିଲା । ଅଥଚ ସେମାନେ ତାହାଙ୍କ ପ୍ରତି ଅସନ୍ତୁଷ୍ଟ ହେଉନଥିଲେ । ସ୍କୁଲ ପରିଦର୍ଶନ ସମୟରେ ସେ ପ୍ରତ୍ୟେକ ବିଷୟ ତନ୍ନ ତନ୍ନ କରି ପରୀକ୍ଷା କରୁଥିଲେ । *ପରିଦର୍ଶନାନ୍ତେ ସେ ଶିକ୍ଷକ ଓ ଛାତ୍ରମାନଙ୍କୁ ନୀତିଗର୍ଭକ ଉପଦେଶ ଦେଉଥିଲେ ଏବଂ ସେମାନଙ୍କୁ ସତ୍ ହେବାପାଇଁ ଅନୁରୋଧ କରୁଥିଲେ ।

---

* ପରିଶିଷ୍ଟରେ ପ୍ରଦତ୍ତ; ତାହାଙ୍କ ସ୍କୁଲ ପରିଦର୍ଶନର ମନ୍ତବ୍ୟରୁ ଏହା ଜଣାଯିବ ।

ଛାତ୍ରମାନଙ୍କୁ ନୀତିପରାୟଣ କରିବା ଉଦ୍ଦେଶ୍ୟରେ ସେ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଚାଣକ୍ୟ ଶ୍ଳୋକମାନଙ୍କ ଆବୃତ୍ତିର ବିଧାନ କରିଥିଲେ ।

ତାହାଙ୍କ କର୍ମଚାରୀଙ୍କ ମଧ୍ୟରେ କେହି କିଛି ଅପରାଧ କଲେ ସେ କୌଶଳରେ ପ୍ରକୃତ ଅବସ୍ଥା ବୁଝି ନେଉଥିଲେ । କେହି ଦୋଷ କରି ତାହା ସ୍ୱୀକାର କଲେ ସେ ବିରକ୍ତ ନ ହୋଇ ସଦୁପଦେଶ ଦେଉଥିଲେ । ମାତ୍ର ମିଥ୍ୟାବାଦୀ ପ୍ରତି ତାହାଙ୍କ ଜାତ କ୍ରୋଧ ଦେଖାଯାଉଥିଲା । ଯାହାହଉ ଜୀବନରେ ସେ କେବେହେଁ କାହାରି ଅନିଷ୍ଟ କରିନାହାନ୍ତି ।

●

# ସପ୍ତମ ପରିଚ୍ଛେଦ

## ଗୃହସ୍ଥ ପ୍ୟାରୀମୋହନ

ପ୍ୟାରୀମୋହନଙ୍କ ପରି ଆଦର୍ଶ ଗୃହସ୍ଥ ଏ ଯୁଗରେ ଅତ୍ୟଳ୍ପ ଦେଖାଯାନ୍ତି । ପିତାମାତାଙ୍କର ଭକ୍ତିମାନ ପୁତ୍ର, ଭ୍ରାତା ଓ ଭଗିନୀମାନଙ୍କ ସ୍ନେହ ଓ ଶ୍ରଦ୍ଧାନ୍ୱିତ ଭ୍ରାତା, ସ୍ତ୍ରୀଙ୍କ କର୍ତ୍ତବ୍ୟ ପରାୟଣ ସ୍ୱାମୀ, ସନ୍ତାନବତ୍ସଳ ପିତା ଏବଂ ସହାନୁଭୂତି ସମ୍ପନ୍ନ ଆତ୍ମୀୟ ଓ ଗ୍ରାମବାସୀରୂପେ ଯେଉଁମାନେ ତାହାଙ୍କୁ ଦେଖିଅଛନ୍ତି ସେମାନେ ଧନ୍ୟ ।

ପ୍ୟାରୀମୋହନ ପିତା ଓ ମାତାଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ । ସେ ସର୍ବଦା ପିତାଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ କରିବା ପାଇଁ ତତ୍ପର ଥିଲେ । ପିତା ମୃତ୍ୟୁ ସମୟରେ ଯେଉଁମାନଙ୍କ ଭାର ତାହାଙ୍କ ଉପରେ ନ୍ୟସ୍ତ କରିଥିଲେ ସେ ମୃତ୍ୟୁପର୍ଯ୍ୟନ୍ତ ସେମାନଙ୍କ ପ୍ରତି କର୍ତ୍ତବ୍ୟର ତ୍ରୁଟି କରି ନାହାନ୍ତି । ଆମ୍ଭେମାନେ ଇତିପୂର୍ବେ କହିଅଛୁ ଯେ, ନିଜର ଅର୍ଜିତ ଧନଦ୍ୱାରା ପିତୃ ସେବାର ସୁଯୋଗ ନ ପାଇ ସେ ମଧ୍ୟେ ମଧ୍ୟେ ଦୁଃଖ ପ୍ରକାଶ କରିଥିଲେ । ସେ ମାତାଙ୍କୁ ନ ପଚାରି କାର୍ଯ୍ୟ କରୁ ନ ଥିଲେ ଏବଂ ପିତାଙ୍କ ଅବର୍ତ୍ତମାନରେ ମାତାଙ୍କର ଏପରି ଯତ୍ନ ନେଉଥିଲେ ଯେ ତାହାଙ୍କର କୌଣସି ଅସନ୍ତୋଷର କାରଣ ନଥିଲା । ଥରେ ଯେ ନଜ ଶ୍ୱଶ୍ରୂଦେବୀଙ୍କୁ ଅସହାୟ ଦେଖି ନିଜ ପାଖକୁ ଘେନି ଆସିଲେ; ମାତ୍ର ସେଥିରେ ମାତାଙ୍କ ଅସନ୍ତୋଷ ଦେଖି ସେ ପୁଣି ଶ୍ୱଶ୍ରୂଙ୍କୁ ନିଜ ଘରକୁ ଫେରାଇଦେଲେ ତହାଙ୍କୁ ଆବଶ୍ୟକ ସାହାଯ୍ୟ ଦେଲେ ।

ତାହାଙ୍କ ଜ୍ୟେଷ୍ଠା ଓ କନିଷ୍ଠା ଭଗିନୀମାନେ ତାହାଙ୍କଠାରେ ଯେପରି ଅଳି କରୁଥିଲେ ଏବଂ ସେ ଯେପରି ପ୍ରଫୁଲ୍ଲ ଅନ୍ତରରେ ସେମାନଙ୍କ ଅଳି ସହ୍ୟକରି ସେମାନଙ୍କ ଅଭାବ ମୋଚନ କରୁଥିଲେ, ତାହା ଅତ୍ୟନ୍ତ ବିରଳ । ଭଗିନୀମାନଙ୍କ ସକଳ ପ୍ରକାର ମନଦୁଃଖ ସେ ଧୈର୍ଯ୍ୟ ସହିତ ଶ୍ରବଣ କରି ସେମାନଙ୍କୁ ସଦୁପଦେଶ ଦାନ ସଙ୍ଗେ ପ୍ରୟୋଜନୀୟ ଅର୍ଥ ଓ ଅନ୍ୟାନ୍ୟ ବସ୍ତୁ ମଧ୍ୟ ଦାନ କରୁଥିଲେ । ଭଗିନୀମାନଙ୍କ ମଧ୍ୟରୁ କେହି କେହି ଦାରିଦ୍ର୍ୟ ପ୍ରଯୁକ୍ତ ସପରିବାର ତାହାଙ୍କ ଉପରେ ନିର୍ଭର କରୁଥିଲେ । ପ୍ୟାରୀମୋହନ ଅକାତରରେ ସେମାନଙ୍କ ଭାର ବହନ କରିଅଛନ୍ତି । ତାଙ୍କର ସ୍ତ୍ରୀ ପ୍ରଥମତଃ ଅତି ସାଧାରଣ ପ୍ରକୃତିର ଲୋକ ଥିଲେ । ପ୍ୟାରୀମୋହନଙ୍କ ସଙ୍ଗ ତଥା ସଦୁପଦେଶ ବଳରେ ସେ ଆଦର୍ଶସ୍ତ୍ରୀର ଆସନ ଗ୍ରହଣ କରିଥିଲେ । ପ୍ୟାରୀବାବୁଙ୍କ ଏକମାତ୍ର ପୁଅ ଭୁବନମୋହନ ଥରେ ମୋତେ କହିଥିଲେ, "ଏପରି ସ୍ୱାମୀର ହାତ ଧରି ନଥିଲେ ମୋର ମାଆ ଏତେ ଉନ୍ନତ ହୋଇ ନଥାନ୍ତେ ।" ସ୍ତ୍ରୀର ବଶୀଭୂତ ହୋଇ କେତେ କେତେ ତଥା କଥିତ ଶିକ୍ଷିତ ବ୍ୟକ୍ତି ନିଜର, ସ୍ତ୍ରୀର ତଥା ପରିବାରବର୍ଗଙ୍କ ଅଶାନ୍ତିର କାରଣ ହୋଇଥାନ୍ତି, କିନ୍ତୁ ପ୍ୟାରୀମୋହନ ସ୍ତ୍ରୀଙ୍କୁ ବଶୀଭୂତ କରି ନିଜର ଓ ନିଜ ପରିବାରର ଶାନ୍ତିବିଧାନ କରିଥିଲେ । ସେ ଯେଉଁ ସ୍ୱାର୍ଥତ୍ୟାଗ-ମନ୍ତ୍ରରେ ଆପଣାକୁ ଦୀକ୍ଷିତ କରିଥିଲେ, ସେହି ମନ୍ତ୍ରରେ ସ୍ତ୍ରୀଙ୍କୁ ମଧ୍ୟ ଦୀକ୍ଷିତ କରି ଜୀବନକୁ ସୁଖଶାନ୍ତିପୂର୍ଣ୍ଣ କରି ପାରିଥିଲେ । ସେ ନିଜ ଗୁଣରେ ସ୍ତ୍ରୀଙ୍କ ଶ୍ରଦ୍ଧା ଓ ଭକ୍ତିର ପାତ୍ର ହୋଇଥିଲେ । ଦିନେ ତାହାଙ୍କ ସ୍ତ୍ରୀ ଭାତୃବିୟୋଗରେ ଅସ୍ଥିର ହୋଇ ବିଳାପ କରୁଥିଲେ । ପ୍ୟାରୀମୋହନ ତାହା ଦେଖି ସ୍ତ୍ରୀଙ୍କୁ ଶାନ୍ତ୍ୱନା ଦେଇ କହିଲେ, "ଦେଖ, ମୁଁ କଣ ତୁମ୍ଭର ଭାଇର କାର୍ଯ୍ୟ କରି ପାରିବି ନାହିଁ ? ତେବେ ଏତେ ଦୁଃଖ କରୁଛ କାହିଁକି ?" ତାଙ୍କର ଏହ ସହାନୁଭୂତିପୂର୍ଣ୍ଣ ଉକ୍ତି ଶ୍ରବଣ କରି ସ୍ତ୍ରୀ ବିଳାପରୁ ବିରତ ହେଲେ ।

ପ୍ୟାରୀମୋହନଙ୍କ ପରି ସନ୍ତାନବତ୍ସଳ ତଥା କର୍ତ୍ତବ୍ୟପରାୟଣ ପିତା ବିରଳ । ସେ ନିଜର କନ୍ୟାମାନଙ୍କୁ ସୁପାତ୍ରରେ ପ୍ରଦାନ କରିଥିଲେ ଏବଂ ସୁପାତ୍ର ଅଭାବରେ କୌଣସି ପାତ୍ରକୁ ଆଣି ନିଜ ଗୃହରେ ରଖି ଶିକ୍ଷିତ କରିବାର ପ୍ରୟାସ କରିଥିଲେ ।

ପୁତ୍ର ପ୍ରତି ତାହାଙ୍କ ଯତ୍ନ ସମ୍ପୂର୍ଣ୍ଣ ଅନିନ୍ଦ୍ୟ । ସେ ସାଧାରଣ ପିତାଙ୍କ ପରି ପୁତ୍ରର କେବଳ ଅଧ୍ୟୟନର ଯତ୍ନ ନେଇ ନିଶ୍ଚିନ୍ତ ରହୁ ନ ଥିଲେ । ତାହାର ଶାରୀରିକ, ମାନସିକ ଓ ପାରମାତ୍ମିକ ଉନ୍ନତି ନିମିତ୍ତ ସୁବନ୍ଦୋବସ୍ତ କରି ଦେଇଥିଲେ । ବ୍ୟାୟାମପାଇଁ ଗୋଟିଏ ଫୁଲକା ବା ବ୍ୟାୟାମର ସ୍ଥାନ ପ୍ରସ୍ତୁତ ହୋଇଥିଲା ଏବଂ

ବ୍ୟାୟାମଙ୍କ ଜନୈକ ଶିକ୍ଷକ ବା ପହିଲମାନ୍ ମାନସିକ ପ୍ରାୟ ଟ ୧ ୫।୨ ୦ ବେତନରେ ନିଯୁକ୍ତ ଥିଲେ । ସେ କେବଳ ଯେ ନିଜର ପୁତ୍ରକୁ ଏହି ବ୍ୟାୟାମର ସୁଯୋଗ ଦେଇଥିଲେ ତାହା ନୁହଁ;ପ୍ରତିବେଶୀ ସମସ୍ତ ଯୁବକ ଏହି ଶିକ୍ଷାର ସୁଯୋଗ ଗ୍ରହଣ କରି ପାରୁଥିଲେ । ବୋଲିବା ବାହୁଲ୍ୟ ଯେ ଏହିପରି ଯତ୍ନ ନେବା ଫଳରେ ତାହାଙ୍କ ପୁତ୍ର ଭୁବନମୋହନଙ୍କ ଶରୀର ସୁଗଠିତ ହୋଇଥିଲା । ସେ ପୁତ୍ରର ମାନସିକ ଉନ୍ନତି ନିମିତ୍ତ ତଦପେକ୍ଷା ଅଧିକତର ଯତ୍ନବାନ ଥିଲେ । ବିଭିନ୍ନ ବିଷୟର ଶିକ୍ଷାଦାନ ନିମିତ୍ତ ସେ ପ୍ରତ୍ୟେକ ବିଷୟରେ ପାରଦର୍ଶୀ ଗୃହଶିକ୍ଷକ ଉଚ୍ଚ ବେତନରେ ନିଯୁକ୍ତ କରିଥିଲେ । "ପ୍ୟାରୀମୋହନ ଏକାଡ଼େମୀର" ସ୍ୱନାମଧନ୍ୟ ପଣ୍ଡିତ ଶ୍ରୀଯୁକ୍ତ ନାରାୟଣ ଦାସ ସଂସ୍କୃତ ଶିକ୍ଷା ଦେବାପାଇଁ, ଶ୍ରୀଯୁକ୍ତ ସୁଦର୍ଶନ ଦାସ(ପରେ ଡେପୁଟି ମେଜିଷ୍ଟ୍ରେଟ) ଇରେଜୀ ଶିକ୍ଷା ଦେବାପାଇଁ, ଶ୍ରୀଯୁକ୍ତ ବାବୁ ମଦନମୋହନ ପଟ୍ଟନାୟକ(ପରେ ଓକିଲ କଟକ) ଗଣିତ ବିଦ୍ୟା ଆଧ୍ୟାପନାର୍ଥ ନିଯୁକ୍ତ ହୋଇଥିଲେ । ସେ ନିଜେ ପୁତ୍ରକୁ ଇତିହାସ ଓ ଭୂଗୋଳ ଶିକ୍ଷାଦାନର ଭାର ଗ୍ରହଣ କରିଥଲେ । ପୁତ୍ରର ପାରମାର୍ଥିକ ଉନ୍ନତି ନିମିତ୍ତ ସେ ଯେଉଁ ବ୍ୟବସ୍ଥା କରିଥିଲେ ତହା ଅତଃପର ବର୍ଣ୍ଣନୀୟ ।

ପୁତ୍ର ଯେପରି ଅସତ୍ ସଙ୍ଗରେ ବାସ ନ କରେ ଏବଂ ଅଧ୍ୟୟନ ସମୟରେ ଅନ୍ୟ ବିଷୟରେ ବ୍ୟାପୃତ ନ ହୁଏ, ସେଥିପାଇଁ ସେ ସର୍ବଦା ସତର୍କ ଥିଲେ । ଅଧ୍ୟୟନ ସମୟରେ ପୁତ୍ର ନିକଟକୁ ତାର କୌଣସି ସଙ୍ଗୀକୁ ଯିବାର ଦେଖିଲେ ସ୍ପଷ୍ଟଭାବରେ ନିଷେଧ କରୁଥିଲେ ।

ଗଣିତ ଶାସ୍ତ୍ରଜ୍ଞ ରେଭେନ୍‌ସା କଲେଜର ଭୂତପୂର୍ବ ଅଧକ୍ଷ ସ୍ୱର୍ଗୀୟ ବିପିନ୍‌ବିହାରୀ ଗୁପ୍ତ(B.V.Gupta)ଥରେ ପ୍ୟାରୀବାବୁଙ୍କ ଗୃହରେ ପଦାର୍ପଣ କରିଥିଲେ । ସେତେବେଳେ ସେ ପ୍ୟାରୀବାବୁଙ୍କ ସହିତ ଉତ୍କଳବାସୀ ବୈଦ୍ୟମାନଙ୍କ ବିବାହ ସମ୍ବନ୍ଧୀୟ କେତେକ ଆଲୋଚନା କରି ଜାଣିପାରିଥିଲେ ଯେ ସେମାନେ ଓଡ଼ିଶାରେ ନିଜର ସଂକୀର୍ଣ୍ଣଗଣ୍ଡି ମଧ୍ୟରେ ବୈବାହିକ ସୂତ୍ରରେ ଆବଦ୍ଧ ହେଉ ଅଛନ୍ତି । ଅତି ନିକଟ ସଂପର୍କ ସହିତ ବୈବାହିକ ସୂତ୍ରରେ ଆବଦ୍ଧ ହେବା ନୈତିକ ଓ ପାରମାତ୍ମିକ ଅକଲ୍ୟାଣର ହେତୁ ବୋଲି ସେ ମତ ପ୍ରକାଶ କଲେ ଏବଂ ତହାହିଁ ଉତ୍କଳବାସୀ ବୈଦ୍ୟମାନଙ୍କ କ୍ରମିକ ଅବନତିର କାରଣ ବୋଲି ନିର୍ଦ୍ଧାରିତ ହେଲା । ସେତେବେଳେ କଲିକତା ସହିତ କଟକର ରେଳବାଇ ଯୋଗେ ପୂର୍ଣ୍ଣ ସଂଯୋଗ ହୋଇ ନ ଥିଲେ

ମଧ୍ୟ ଉତ୍କଳବାସୀ ବୈଦ୍ୟମାନଙ୍କୁ ବଙ୍ଗଦେଶର ବୈଦ୍ୟମାନଙ୍କ ସହିତ ବିବାହ-ସୂତ୍ରରେ ଆବଦ୍ଧ ହେବା ପାଇଁ ସେ ଅନୁରୋଧ କଲେ । ତାହାଙ୍କ ଏହି ଅନୁରୋଧ ଅନୁଯାୟୀ ପ୍ୟାରୀବାବୁ ବଙ୍ଗଦେଶରେ ନିଜର ଏକମାତ୍ର ପୁତ୍ରକୁ ବିବାହିତ କରିବା ପାଇଁ ସଂକଳ୍ପ କଲେ । ସେ କଲିକତାକୁ ଯାଇ ଗୋଟିଏ ପାତ୍ରୀର ଅନ୍ୱେଷଣ କରିବାକୁ ଲାଗିଲେ । କୌଣସି ଧନୀ ପରିବାରରୁ ପାତ୍ରୀ ଗ୍ରହଣ ନ କରି ଗୋଟିଏ ସମସ୍କନ୍ଧ ବା ଦରିଦ୍ର ପରିବାରରୁ ତାହା ମନୋନୀତ କରିବାର ସଂକଳ୍ପ ତାହାଙ୍କ ହୃଦୟରେ ଥିଲା । ତଦନୁଯାୟୀ ସେ ଗୋଟିଏ ଦୁସ୍ଥ ପରିବାରରୁ କନ୍ୟା ଆଣି ପୁତ୍ରକୁ ବିବାହିତ କଲେ ।

ପୁତ୍ରକୁ ବିବାହ ଦେବାକୁ ଯାଇ ସେ ଅକାତରରେ ଅର୍ଥ ବ୍ୟୟ କରିଥିଲେ । ହେି ବିବାହ ଉତ୍ସବରେ ଆମ୍ଭେମାନେ ତାହାଙ୍କ କେତେଗୁଡ଼ାଏ ଉଚ୍ଚ ଗୁଣ ଦେଖି ମୁଗ୍ଧ ହୋଇଛୁ । ଅମାନୀକୁ ମାନଦାନ, ସାଧୁବ୍ୟକ୍ତଙ୍କ ଗୋଟିଏ ଲକ୍ଷଣ । ଏହି ସମୟରେ ଗ୍ରାମସ୍ଥ ଜୈନିକ ଆଳସ୍ୟପରାୟଣ ଅତି ଦରିଦ୍ର ବ୍ୟକ୍ତି ସାମାନ୍ୟ ତ୍ରୁଟି ନିମିତ୍ତ ବିବାହର ନିମନ୍ତ୍ରଣ ପ୍ରତ୍ୟାଖାନ କଲେ । ସେ କଥା ପ୍ୟାରୀବାବୁଙ୍କ ଶ୍ରୁତିଗୋଚର ହେଲା । ସେ ତତ୍‌କ୍ଷଣାତ୍ ତାହାଙ୍କ କୁଟୀରକୁ ଯାଇ ତାହାଙ୍କ ହାତ ମୁହଁ ଧରି ତାହାଙ୍କୁ ନିଜ ଘରକୁ ଘେନି ଆସିଲେ । ତାହାଙ୍କୁ ଭୋଜନରେ ବସାଇ ପ୍ୟାରୀବାବୁ ତାହାଙ୍କ ଆହାର ଶେଷ ହେବା ପର୍ଯ୍ୟନ୍ତ ଯେପରି ଅବହିତ ରହିଲେ, ତାହା ସମାଜର ଅନ୍ୟାନ୍ୟ ବ୍ୟକ୍ତିଙ୍କ ପକ୍ଷେ ଅନୁକରଣୀୟ ।ସେ ବ୍ୟକ୍ତି ପ୍ୟାରୀବାବୁଙ୍କ ପରି ପୂଜ୍ୟବ୍ୟକ୍ତିଙ୍କ ଠାରୁ ସମ୍ମାନ ପାଇ ଆପଣାକୁ କୃତାର୍ଥ ମନେ କଲେ । ପୁତ୍ରର ଏହି ବିବାହ ଉତ୍ସବରେ ସେ ଗ୍ରାମର କାହାରିକି ଭୁଲି ନାହାନ୍ତି- ସମସ୍ତଙ୍କୁ ନିମନ୍ତ୍ରଣ କରି ସମସ୍ତଙ୍କର କଟକ ପୁରୀ ବା ଅନ୍ୟାନ୍ୟ ସ୍ଥାନରୁ ଗ୍ରାମ ପର୍ଯ୍ୟନ୍ତ ପାଥେୟ ବହନ କରି ସେମାନଙ୍କ ଭୂରି ଭୂରି ପ୍ରଶଂସାର ପାତ୍ର ହୋଇଥିଲେ । ଏହି ଉତ୍ସବରେ ଆତ୍ମପର ଓ ଧନୀ ଦରିଦ୍ର ଭେଦ କେହି ତହାଙ୍କଠାରେ ଦେଖି ନାହାନ୍ତି ।

ଆତ୍ମୀୟମାନଙ୍କ ପ୍ରତି ତାହାଙ୍କ ସହାନୁଭୂତି ଅନୁକରଣୀୟ । ମୋର ଜନନୀ ତାହାଙ୍କ ଜ୍ୟେଷ୍ଠ ଭଗିନେୟଙ୍କ ସ୍ତ୍ରୀ । ମୋର ପିତୃଦେବଙ୍କୁ ବହୁ ସମୟରେ ଅର୍ଥାର୍ଜନ ନିମିତ୍ତ ବିଦେଶବାସ କରିବାକୁ ହେଉଥାଏ । ତେଣୁ ମୋର ମାତା ଅଳ୍ପ ବୟସ୍କ ପୁତ୍ରମାନଙ୍କୁ ଘେନି ପ୍ରାୟ ନିଃସହାୟ ଅବସ୍ଥାରେ କଟକରେ ଥାନ୍ତି । ଗ୍ରୀଷ୍ମ କାଳରେ କଟକ ସହରରେ ଯେଉଁମାନେ ଗୃହଦାହର ବିଭୀଷିକା ଦେଖି ଅଛନ୍ତି, ସେମାନେ

ମୋର ମାତାଙ୍କ ପରି ସ୍ତ୍ରୀ ଲୋକଙ୍କ ଦୁର୍ଦ୍ଦଶା(ବିଶେଷତଃ ଆମ୍ଭେମାନେ ଦ୍ୱିପହର ବେଳେ ସ୍କୁଲରେ ଥିବା ସମୟରେ) ସହଜରେ ଅନୁମାନ କରିପାରିବେ । ଏହି ସମୟରେ କୌଣସି ନିକଟବର୍ତ୍ତି ଗୃହ ଅଗ୍ନିସାତ ହେବାର ଦେଖିଲେ ପ୍ୟାରୀବାବୁ ଅବିଳମ୍ବେ ଆମ୍ଭ ଗୃହଠାକୁ ଆସି ମୋର ମାଙ୍କୁ ନିଜ ଗୃହକୁ ଘେନି ଯାଉଥିଲେ ଏବଂ ଆମ୍ଭ ଘରେ ଲୋକ ରଖିଦେଉଥିଲେ । କାରଣ ସେତେବେଳେ ଆମ୍ଭମାନଙ୍କ ବାସଗୃହ ପକ୍‌କା ନଥିଲା । ପ୍ୟାରୀବାବୁ ଏହିପରି ଉତ୍କଣ୍ଠା ଅନ୍ୟାନ୍ୟ ଆତ୍ମୀୟଙ୍କ ପ୍ରତି ମଧ୍ୟ ଦେଖାଯାଉଥିଲା ।

ଆମ୍ଭେମାନେ ତାହାଙ୍କର ଆଉ ଗୋଟିଏ କାର୍ଯ୍ୟ ସ୍ମରଣ କରି ଆଜି ମଧ୍ୟ ପୂର୍ବାନନ୍ଦ ଅନୁଭବ କରୁଁ । ସେ କଟକରୁ ଗ୍ରାମକୁ ଗଲାବେଳେ ସଙ୍ଗରେ କାଗଜ, କଲମ, ପେନ୍‌ସିଲ୍, ବହି, ମିଶ୍ରି, କିସ୍‌ମିସ୍ ପ୍ରଭୃତି ବହୁ ଦ୍ରବ୍ୟ ନେଇଯାଇଥାନ୍ତି । ଯେତେବେଳେ ଗ୍ରାମବାସୀ ଆତ୍ମୀୟମାନଙ୍କ ଗୃହକୁ ବୁଲି ଯାଆନ୍ତି, ସେତେବେଳେ ତାଙ୍କର ଭୃତ୍ୟ ଉକ୍ତ ପଦାର୍ଥମାନ ସଙ୍ଗରେ ଘେନିଥାଏ । ପ୍ୟାରୀବାବୁ ବାଳକମାନଙ୍କ ପାଠ ପରୀକ୍ଷା କରି, ତାହାକୁ ତାହା ଅର୍ଥାତ କାଗଜ, କଲମ, ବା ପେନ୍‌ସିଲ ଦେଇ ଆସନ୍ତି । ପିଲାଏ ଅଧିକନ୍ତୁ ତାଙ୍କ ଠାରୁ ମିଶ୍ରି ଓ କିସ୍‌ମିସ ପାଇ ଆନନ୍ଦ ଲାଭ କରନ୍ତି ଓ ସେ ଗ୍ରାମରୁ ଗଲେ ପୁଣି କେବେ ଗ୍ରାମକୁ ଫେରିବେ ସେଥିପାଇଁ ରହିଁ ରହିଥାନ୍ତି । କେବଳ ବାଳକମାନଙ୍କ ଅଭାବ ମୋଚନ କରି ଏହି ଉନ୍ନତ ହୃଦୟ ସ୍ଥିର ରହେ ନାହିଁ । ସେ ଦୁସ୍ଥ ପରିବାରକୁ ଯାଇ ସେମାନଙ୍କ ଦୁର୍ଦ୍ଦଶାରେ ସମବେଦନା ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଅର୍ଥ ସାହାଯ୍ୟ କରନ୍ତି ଏବଂ କାହାରିକି ବିଶେଷତଃ ଅସହାୟ ବିଧବାମାନଙ୍କୁ ମାସିକ ଅର୍ଥସାହାଯ୍ୟର ପ୍ରତିଶ୍ରୁତି ଦେଇ ଆସନ୍ତି । ସେ ତାହାଙ୍କ ଶେଷ ସମୟ ଏପର୍ଯ୍ୟନ୍ତ ଏହିପରି ବହୁ ପରିବାରକୁ ଅର୍ଥ ସାହାଯ୍ୟ କରୁଥିଲେ ଏବଂ ବହୁଛାତ୍ରଙ୍କ ସ୍କୁଲବେତନ ପ୍ରତି ମାସରେ ସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ପଠାଇ ଦେଉଥିଲେ ।

●

# ଅଷ୍ଟମ ପରିଚ୍ଛେଦ

## କର୍ମରୁ ଅବସରଗ୍ରହଣ ଓ ମୃତ୍ୟୁ

ପ୍ୟାରୀମୋହନ ପୂର୍ଣ୍ଣ ୩୦ ବର୍ଷ କାଳ ସୁଖ୍ୟାତି ସହିତ ଶିକ୍ଷା ବିଭାଗରେ କାର୍ଯ୍ୟକରି ୧୮୯୮ ସାଲର ଜାନୁୟାରୀ ମାସର ପ୍ରଥମ ସପ୍ତାହରେ ଅବସର ଗ୍ରହଣ କଲେ । ଏହି ସମୟରେ ତାହାଙ୍କ ପୁତ୍ର ଭୁବନ ମୋହନ ଏଫ୍,ଏ, ପରୀକ୍ଷାରେ ପାଶ କରିଥାଆନ୍ତି ।ପ୍ୟାରୀବାବୁ ନିଜର ଜାତିଗତ ଡାକ୍ତରୀ ବିଦ୍ୟା ପୁତ୍ରକୁ ପଢ଼ାଇବା ପାଇଁ ତାହାଙ୍କୁ କଲିକତା ଘେନିଗଲେ । ଏକମାତ୍ର ପୁତ୍ରର ବିରହ ପିତା ଓ ମାତା ପକ୍ଷରେ ଅସହ୍ୟ; ତେଣୁ ଉଭୟେ କଲିକତାରେ ଖଣ୍ଡିଏ ବସା ଭଡ଼ା ନେଇ ପୁତ୍ରସହ ବାସକଲେ । ଏହି ସମୟରେ ଗୋପିବାବୁଙ୍କ ଏକମାତ୍ର ପୁତ୍ର ରୁଗ୍‌ଣ ଥିବାରୁ ଚିକିତ୍ସାର୍ଥ ପ୍ୟାରୀବାବୁ ତାହାଙ୍କୁ କିଛିଦିନ ପାଖରେ ରଖିଲେ । ନବ ପୁତ୍ରବଧୂ ମଧ୍ୟ ପାଖରେ ରହିଲେ । ସୁତରାଂ ଗୋଟିଏ କ୍ଷୁଦ୍ର ପରିବାର ଘେନି ସେ କଲିକତାରେ ବାସ କଲେ ।

ପ୍ୟାରୀବାବୁ ସର୍ବଦା ନିରଳସ । ତେଣୁ କର୍ମରୁ ଅବସର ଘେନି ସେ କଣ କରିବେ ? ମହାଜନମାନେ କହିଅଛନ୍ତି-

"ସଂସାର ବିଷ ବୃକ୍ଷସ୍ୟ ଦ୍ୱେ ଏବ ମଧୁରେ ଫଳେ ।
କାବ୍ୟାମୃତରସାସ୍ୱାଦଃ, ସଙ୍ଗମଃ ସଜ୍ଜନୈଃ ସହ ।"

ପ୍ୟାରୀମୋହନ ସତ୍‌ଗ୍ରନ୍ଥପାଠ ଏବଂ ସଜ୍ଜନମାନଙ୍କ ସହିତ ଆଳାପରେ ତାହାଙ୍କ ସମୟ ଯାପନ କରିବାକୁ ଲାଗିଲେ । ଏହି ସମୟରେ ନବିନ ଚନ୍ଦ୍ର ସେନ୍ ପ୍ରମୁଖ ସ୍ୱର୍ଗତ କେଶବ ଚନ୍ଦ୍ର ସେନ୍‌ଙ୍କ ଶିଷ୍ୟମାଙ୍କ ସହିତ ତାଙ୍କର ପରିଚୟ ହେଲା । ସେ କେଶବ ବାବୁଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ବର୍ତ୍ତମାନ କେଶବ ଚନ୍ଦ୍ର ସେନ୍ ସ୍ୱର୍ଗତ । ସୁତରାଂ ସେମାନଙ୍କ ସଙ୍ଗଲାଭ କରି ସେ କାଳ ହରଣ କରୁଥାନ୍ତି। ସେମାନଙ୍କ ନିକଟରୁ ସେ ଭଗବାନ୍ ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କ ଆଲୋକ ସାମାନ୍ୟ ଜୀବନର କାହାଣୀ ଶୁଣି ତାହାଙ୍କ ପ୍ରତି ଆକୃଷ୍ଟ ହେଲେ । ସେତେବେଳେ ସୁରେଶ ଚନ୍ଦ୍ର ମିତ୍ରଙ୍କ କର୍ତ୍ତୃକ ସଂଗୃହୀତ "ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କ ଉପଦେଶାବଳୀ"ର କେତେକ ଖଣ୍ଡ ବଜାରରେ ବିକ୍ରିତ ହେଉଥାଏ । ପ୍ୟାରୀବାବୁ ସେଥିରୁ କେତେକ ଖଣ୍ଡ କିଣିଆଣି ପୁତ୍ରକୁ ଦେଇ କହିଲେ, "ଏ ବହି ପଢ଼ା ଦେଖ୍, ଏହାକୁ ପାଠକଲେ ତୋର ଅନେକ ଉପକାର ହେବ ।" ପିତା ଏଠି ପୁତ୍ରର ପାରମାର୍ଥିକତାର ବୀଜ ବପନ କରିଦେଲେ । ଏବଂ ତତ୍‌ସଙ୍ଗେ ଯେ କେତେ ଜୀବନ ଉପକୃତ ହେଲା ତାହାର ସଂଖ୍ୟା ନାହିଁ । ଭୁବନ ମୋହନ ଏହି ଉପଦେଶ ଗୁଡ଼ିକ ପାଠକରି ମୁଗ୍ଧ ହେଲେ । ସେ କିଛିଦିନ ପରେ କଟକକୁ ଫେରିବା ସମୟରେ ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କ କେତେଖଣ୍ଡ ପ୍ରତିକୃତି ଓ ଉପଦେଶାବଳି ଆଣି ଆମ୍ଭମାନଙ୍କୁ ସ୍ନେହୋପହାର ଦେଇଥିଲେ । ସେ ଆଜିକି ୩୭ ବର୍ଷ ତଳର କଥା- କିନ୍ତୁ ମୋର ଉତ୍ତମ ରୂପେ ସ୍ମରଣ ହେଉ ଅଛି ଯେ, ମୋତେ ପ୍ରଦତ୍ତ ପ୍ରତିକୃତିର ଅପର ପାର୍ଶ୍ୱରେ ଇଂରାଜୀରେ ଲେଖାଥିଲା, "Presented to Krishna Chandra Sen Gupta for his spiritual improvement." ଅର୍ଥାତ୍ ଶ୍ରୀ କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତର ପାରାମର୍ଥିକ ଉନ୍ନତି ନିମିତ୍ତ ତାହାକୁ ଏହା ଉପହୃତ ହେଲା ।" ତାହାଙ୍କର ଏହି ସ୍ନେହୋପହାରୀ ନିମିତ୍ତ ମୁଁ ଏବଂ ମୋର ଉତ୍କଳୀୟ ବନ୍ଧୁମାନେ ଯେ କି ପରିମାଣରେ ତାଙ୍କଠାରେ ଋଣୀ, ତାହା ଏଠାରେ ସାମାନ୍ୟ ଭାଷା ସାହାଯ୍ୟରେ ବ୍ୟକ୍ତ ହେବାର ନୁହେଁ । ଭୁବନମୋହନ କେବଳ ପୁସ୍ତକ ଓ ପ୍ରତିକୃତି ଦେଇ ନିଶ୍ଚିନ୍ତ ନରହି "ଶ୍ରୀ ଶ୍ରୀ ରାମକରଷ୍ଣ କଥାମୃତ" ଓ ବିବେକାନନ୍ଦଙ୍କ ବକ୍ତୃତାବଳି ପାଠକରି ବହୁ ଧର୍ମତତ୍ତ୍ୱ ଆମ୍ଭମାନଙ୍କୁ ଶୁଣାଇବାକୁ ଲାଗିଲେ । ସେତେବେଳେ ସେ ରାମକୃଷ୍ଣ-ବିବେକାନନ୍ଦ ଭାବରେ ଉନ୍ମତ୍ତ; ତେଣୁ ତାଙ୍କର ପାଠ ଅପେକ୍ଷା କଥାଗୁଡ଼ିକ ଅଧିକତର ଚିତ୍ତାକର୍ଷକ ଥିଲା । ସେ (Indian Mirrior) ଇଣ୍ଡିୟାନ୍ ମିରର୍ ନାମକ କଲିକତାର ଖଣ୍ଡିଏ ଦୈନିକ ଇଂରାଜୀ ପତ୍ରରୁ ସ୍ୱାମୀ ବିବେକାନନ୍ଦଙ୍କ ଆମେରିକା ଓ

ଇଂଲଣ୍ଡରେ ପ୍ରଦତ୍ତ ଓଜସ୍ୱିନୀ ଭାଷାରେ ବ୍ୟକ୍ତ ବକ୍ତୃତାବଳି ଆମ୍ଭମାନଙ୍କ ସମ୍ମୁଖରେ ପାଠକରି ଆମ୍ଭମାନଙ୍କ ପ୍ରାଣକୁ ଉତ୍ତେଜିତ କରୁଥାନ୍ତି । ଏହି ସମୟରେ ଶ୍ରୀ ଶ୍ରୀ ରାମକୃଷ୍ଣ ବିବେକାନନ୍ଦଙ୍କ ପ୍ରତି ତାହାଙ୍କ ଭକ୍ତି ପ୍ରୀତି ଓ ଅନୁରାଗ ଦର୍ଶନ କରି ଆମ୍ଭେମାନେ ମୁଗ୍ଧ ହୋଇଥିଲୁଁ ।

ଯାହାହେଉ, ଭୁବନମୋହନ ମେଡ଼ିକାଲ କଲେଜରେ ଅଧ୍ୟୟନ କରିବାର ପ୍ରାୟ ଦେଢ଼ବର୍ଷ ପରେ ପ୍ୟାରୀମୋହନ ୧୨/୧୩ ଦିନ କାଳ ସାମାନ୍ୟ ଭାବରେ ଅସୁସ୍ଥ ହେଲେ । ୧୯୦୦ ମସିହା ଅଗଷ୍ଟ ମାସ ୧୧ ତାରିଖ ଶନିବାର ସକାଳ ୮ଟା ବେଳେ ସେ ପୁତ୍ରଙ୍କୁ ନିଜ ପାର୍ଶ୍ୱକୁ ଡାକି କହିଲେ, "ଭୁବନ, ମୋର ଶ୍ରାଦ୍ଧରେ ଋଣ କରିବୁ ନାହିଁ ।" ଏତିକି ଶୁଣି ସ୍ତ୍ରୀ ପୁତ୍ରମାନେ ଟିକିଏ ଦୁଃଖିତ ହେଲେ । ତାହାର ପରମୁହୂର୍ତ୍ତରେ ସେ ପୁଣି ପୁତ୍ରକୁ ଡାକି କହିଲେ, "ଭୁବନ ଶ୍ରୀ ଶ୍ରୀ ରାମକୃଷ୍ଣଙ୍କ ଛବି ମୋ ମୁଣ୍ଡ ଉପରେ ଟାଣିଦେ ।" ପୁତ୍ର ଅବିଳମ୍ବେ ପିତାଙ୍କ ଆଦେଶ ପାଳନ କଲେ ।ଏହାର ଅଳ୍ପକ୍ଷଣ ପରେ ସେ ଉକ୍ତ ପ୍ରତିକୃତି ଆଡ଼କୁ ଚକ୍ଷୁ ଫେରାଇଲେ ଏବଂ କିଛି ସମୟ ଉକ୍ତ ପ୍ରତିକୃତି ଉପରେ ତାହାଙ୍କ ଦୃଷ୍ଟି ନିବଦ୍ଧ ରହିଲା । ପ୍ରାୟ ଦିନ ୧୦ଟା ସମୟରେ ୬୨ ବର୍ଷ ବୟସରେ ତାହାଙ୍କ ଗଙ୍ଗା ପ୍ରାପ୍ତିର ସମୟ ଉପସ୍ଥିତ ହେଲା । ସେ ଦୁଃଖଶୋକପୂର୍ଣ୍ଣ ଏହି ମରଧାମ ତ୍ୟାଗ କରି ଅମୃତମୟ ଅମରଧାମକୁ ଚାଲିଗଲେ । ଶାସ୍ତ୍ର କହିଅଛନ୍ତି, "ଜୀବର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।" ତାହାଙ୍କ ମୃତ୍ୟୁ ସମୟରୁ ଉପର୍ଯ୍ୟୁକ୍ତ ଘଟଣାରୁ ପାଠକ ପାଠିକା ତାହାଙ୍କ ନିଷ୍କଳଙ୍କ ଜୀବନର ପ୍ରମାଣ ପାଇ ପାରିବେ । ବୋଲିବା ବାହୁଲ୍ୟ ଯେ, ପ୍ୟାରୀମୋହନ ଦାନରେ ଅଭ୍ୟସ୍ତ ଥିବାରୁ ଧନ ସଞ୍ଚୟ କରି ନ ଥିଲେ । ତେଣୁ ତାହାଙ୍କର ବିୟୋଗାନ୍ତେ ତାହାଙ୍କ ପୁତ୍ର ମାତା ଓ ସ୍ତ୍ରୀଙ୍କୁ ସଙ୍ଗରେ ଘେନି କଟକକୁ ଫେରିଆସିଲେ ଏବଂ କଲିକତାରେ ଥାଇ ବ୍ୟୟସାଧ୍ୟ ଡାକ୍ତରି ବିଦ୍ୟା ଆଉ ପଢ଼ି ପାରିଲେ ନାହିଁ । ସେ ପରେ ଓକିଲାତି ପାଶ କରି ଅଦାଲତରେ ଜଣେ ଓକିଲ ହୋଇଥିଲେ ।

ଉତ୍କଳ ଗଗନରୁ ପ୍ୟାରୀ ବାବୁଙ୍କ ପରି ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ଅନ୍ତର୍ହିତ ହେଲା । କେତେ କେତେ ନରନାରୀ ଯେ ତାହାଙ୍କ ବିୟୋଗରେ ନିଃସହାୟ ହୋଇ ପଡ଼ିଲେ କିଏ ତାହା କହି ପାରିବ ? ସେ ଗୋପନରେ ଏତେ ଦାନ କରୁଥିଲେ ଯେ, ତାହା ତାଙ୍କର ଜୀବିତାବସ୍ଥାରେ କେହି ଜାଣି ପାରି ନ ଥିଲେ । ଯେ

ଯେଉଁଠାରେ ତାଙ୍କ ମୃତ୍ୟୁ ସମ୍ବାଦ ପାଇଲେ; ସେ ସେଠାରେ ହାୟ ହାୟ କରି ମ୍ରିୟମାଣ ହୋଇ ରହିଲେ । ଉତ୍କଳ ପକ୍ଷରେ ତାହାଙ୍କ ଅଭାବ ସାମାନ୍ୟ ନୁହେଁ;- କାରଣ ତାହାଙ୍କ ପରି ଚରିତ୍ରବାନ ବ୍ୟକ୍ତି ଉତ୍କଳରେ ବିରଳ କହିଲେ ଅତ୍ୟୁକ୍ତି ହେବ କି ?ଏହାର ମୃତ୍ୟୁ ସମ୍ବାଦ ପାଇ ୧୮-୮-୧୯୦୦ରେ ଉତ୍କଳର ଏକମାତ୍ର ସମ୍ବାଦପତ୍ର 'ଉତ୍କଳ ଦୀପିକା'ରେ ନିମ୍ନଲିଖିତ ପଂକ୍ତିମାନ ପ୍ରକାଶିତ ହୋଇଥିଲା:-

"ଏଠାରେ ପେନ୍‌ସନ୍ ପ୍ରାପ୍ତ ସ୍କୁଲ ଡେପୁଟି ଇନ୍‌ସପେକ୍ଟର ବାବୁ ପ୍ୟରୀମୋହନ ସେନ ଆପଣା ପୁତ୍ରକୁ ଏକବର୍ଷରୁ ଊର୍ଦ୍ଧ୍ୱ ହେଲା କଲିକତା ମେଡ଼ିକାଲ କଲେଜ୍‌ରେ ଭର୍ତ୍ତି କରି ତାହାର ରକ୍ଷଣା ବେକ୍ଷଣ ନିମନ୍ତେ ସେହିଠାରେ ରହିଥିଲେ । ପ୍ରାୟ ଏକ ସପ୍ତାହ ଜ୍ୱର ଭୋଗ କରି ଗତ ଶନିବାର ସକାଳ ୯ ଘଣ୍ଟା ବେଳେ ପରଲୋକ ଗମନ କଲେ । ଜଣେ ଭଲ କବିରାଜ ଚିକିତ୍ସା କରୁଥିଲେ, ମାତ୍ର ଆୟୁ ଶେଷ ହେଲେ କିଏ ରକ୍ଷା କରିବ ? ତାହାଙ୍କର ବୟସ ୬୨ ବର୍ଷ ହୋଇଥିଲା । ସେହିଦିନ ତାର ଡାକରେ ଏହି ଶୋକ ସମ୍ବାଦ ଏଠାରେ ପ୍ରକାଶ ପାଇଲାଏବଂ ତାହାଙ୍କର ଆତ୍ମୀୟ ବନ୍ଧୁ କୁଟୁମ୍ବ ଏବଂ ପରିଚିତ ଲୋକମାନେ ମହା ଶୋକ ସାଗରରେ ନିମଗ୍ନ ହେଲେ । ପ୍ୟାରୀବାବୁ ଓଡ଼ିଶାର ତିନି ଜିଲ୍ଲାର ସ୍କୁଲ ଡେପୁଟି ଇନ୍‌ସପେକ୍‌ଟର କାର୍ଯ୍ୟ କରି ନିଯୋଗର ଯୋଗ୍ୟତା ନିରପେକ୍ଷ ବିଚାର, ସଚ୍ଚରିତ୍ର, ଉଦାର ସ୍ୱଭାବ ଏବଂ ମିଷ୍ଟାଳାପ ଦ୍ୱାରା ଏତେ ଲୋକଙ୍କର ଭକ୍ତି ଓ ଶ୍ରଦ୍ଧାର ପାତ୍ର ହୋଇଥିଲେ ଯେ, ତାହାଙ୍କର ମୃତ୍ୟୁ ଗୋଟିଏ ସାଧାରଣ ଦୁଃଖର ବିଷୟ ବୋଲି ଅନାୟସରେ ବୋଲାଯାଇପାରେ । ପ୍ରକୃତରେ ସେ ଜଣେ ସାଧୁଲୋକ ଥିଲେ । ଏମନ୍ତ ଲୋକର ଅକାଳ ମୃତ୍ୟୁ ସାମାନ୍ୟ କ୍ଷତି ନୁହେଁ । ପରମେଶ୍ୱର ତାହାଙ୍କ ଆତ୍ମାର ମଙ୍ଗଳ ଓ ପର୍ବାର ବର୍ଗର ସାନ୍ତ୍ୱନା ବିଧାନ କରନ୍ତୁ ।"

●

# ନବମ ପରିଚ୍ଛେଦ

## ପ୍ୟାରୀମୋହନଙ୍କ ଚରିତ୍ର

ପ୍ୟାରୀମୋହନ ଚରିତ୍ର ସମ୍ବନ୍ଧରେ କିଛି ଲେଖିବା ପୂର୍ବରୁ ସେ ଯେଉଁ ସମୟରେ ଜନ୍ମ ଗ୍ରହଣ କରିଥିଲେ ତାହାର ଟିକିଏ ଆଭାସ ଏଠାରେ ଦେବା ଦରକାର । ପାଠକ ପାଠିକା ସେ ସମୟର ଧାରଣା କରି ପାରିଲେ ପ୍ୟାରୀବାବୁଙ୍କ ଚରିତ୍ର ଉଜ୍ଜ୍ୱଳତର ରୂପେ ସେମାନଙ୍କ ସମ୍ମୁଖରେ ପ୍ରତିଭାତ ହେବ ।

ଏହି ସମୟରେ କି ବଙ୍ଗଦେଶ, କି ଉତ୍କଳ ସର୍ବତ୍ର ଇଂରାଜୀ ଶିକ୍ଷା ପ୍ରବର୍ତ୍ତିତ ହୋଇଥିଲା । ଶିକ୍ଷିତ ବ୍ୟକ୍ତି ମାତ୍ରକେ ସାହେବ ମାନଙ୍କ ଅନୁକରଣରେ ଆପଣାକୁ ଗୌରବାନ୍ୱିତ ମନେକରୁଥିଲେ । କାହାରି ଭିତର ଅନୁକରଣ କରିବା ଯେପରି କଷ୍ଟକର, ବାହାର ଅନୁକରଣ କରିବା ସେହିପରି ବା ତଦ୍ଧୋଧିକ ସହଜ । ସୁତରାଂ ଇଂରାଜୀ ଶିକ୍ଷାପ୍ରାପ୍ତ ବ୍ୟକ୍ତିମାନେ ସାହେବଙ୍କ ବାହାର ଅର୍ଥାତ୍ ସେମାନଙ୍କ ବେଶଭୁଷା ଓ ଖାଦ୍ୟପେୟ ପ୍ରଭୃତିର ଅନୁକରଣ କରିବା ସଙ୍ଗେ ସଙ୍ଗେ ହିନ୍ଦୁତ୍ୱ ବିସର୍ଜନ କରି ନିଜକୁ କୃତ୍ୟ କୃତ୍ୟ ମନେ କରୁଥିଲେ । ଏହି ସମୟରେ ଶିକ୍ଷିତ ବ୍ୟକ୍ତିମାନେ ଧନ ଓ ବୁଦ୍ଧିମତ୍ତାର ଯେପରି ଆଦର କରୁଥିଲେ, ନୀତି ପରାୟଣତା ବା ଧର୍ମବୁଦ୍ଧିର ସେପରି ଆଦର ନଥିଲା । ସଂଯମ ପରିବର୍ତ୍ତେ ସ୍ୱେଚ୍ଛାଚାରିତାର ପ୍ରସାର ସମଧିକ ହୋଇଥିଲା । ତଥାକଥିତ ଶିକ୍ଷିତ ହିନ୍ଦୁମାନେ ନିଜ ନିଜ ଧର୍ମତ୍ୟାଗ କରି ଧର୍ମାନ୍ତର ଗ୍ରହଣକୁ ଗୌରବର ବିଷୟ ମଣୁଥିଲେ । ମୋଟରେ କହିବାକୁ ଗଲେ, ହିନ୍ଦୁଧର୍ମ ପକ୍ଷରେ ଏହା ଗୋଟିଏ ବିପ୍ଳବର ଯୁଗ । ଏହିଭଳି ସମୟରେ ଜନ୍ମଗ୍ରହଣ କରି ମଧ୍ୟ ପ୍ୟାରୀମୋହନ କିପରି ଆଦର୍ଶ ଚରିତ୍ରର ପରାକାଷ୍ଠା ଦେଖାଇ ଯାଇଛନ୍ତି ତାହା ଆମ୍ଭେମାନେ ଏହିଠାରେ ଦେଖାଇବୁ ।

ଚରିତ୍ରକୁ ମନୀଷୀମାନେ ପୁଷ୍ପସ୍ତବକ ସହିତ ତୁଳନା କରି ଅଛନ୍ତି । ଯେପରି ନାନାବିଧ ସୁନ୍ଦର ପୁଷ୍ପର ସମାବେଶ ଦ୍ୱାରା ପୁଷ୍ପସ୍ତବକର ଶୋଭା ବୃଦ୍ଧି ପାଏ, ସେହିପରି ନାନା ସଦ୍‌ଗୁଣର ସମାବେଶ ଦ୍ୱାରା ଚରିତ୍ର ମନୋହର ହୁଏ । ପ୍ୟାରୀବାବୁଙ୍କ ଚରିତ୍ରରେ ଯେଉଁ ଯେଉଁ ସଦ୍‌ଗୁଣମାନ ଦେଖାଦେଇଅଛି ତାହା ନିମ୍ନରେ ବିବୃତ ହେଲା ।

ସଂଯମ ଏହାଙ୍କର ସର୍ବପ୍ରଧାନ ଗୁଣ । ସ୍ୱର୍ଗୀୟ ବନମାଳୀ ସିଂହ (ଢେଙ୍କାନାଳର ଭୂତପୂର୍ବ ମେନେଜର),ସ୍ୱର୍ଗୀୟ ଜଗନ୍ମୋହନ ରାୟ (ଡେପୁଟି ମାଜିଷ୍ଟ୍ରେଟ୍), ସ୍ୱର୍ଗୀୟ ଗୌରୀଶଙ୍କର ରାୟ (ଉତ୍କଳ ଦୀପିକାର ଭୂତପୂର୍ବ ସମ୍ପାଦକ), ସ୍ୱର୍ଗୀୟ ଜଗନ୍ମୋହନ ଲାଲ, ସ୍ୱର୍ଗୀୟ ବିଚିତ୍ରାନନ୍ଦ ଦାସ, ସ୍ୱର୍ଗୀୟ ନନ୍ଦକିଶୋର ଦାସ, ସ୍ୱର୍ଗୀୟ ବିଚ୍ଛନ୍ଦ ପଟ୍ଟନାୟକ ପ୍ରଭୃତି ତାହାଙ୍କର ବନ୍ଧୁଥିଲେ । ଏହି ବନ୍ଧୁମାନଙ୍କ ନିକଟରୁ ସେମାନଙ୍କର ସଦ୍‌ଗୁଣମାନ ଗ୍ରହଣ କରି କାହାରି କୌଣସି ଅସଦ୍‌ଗୁଣଥିଲେ ସେ ତତ୍‌ପ୍ରତି ଦୃଷ୍ଟି ଦେଉ ନ ଥିଲେ । ୰ ଫକୀରମୋହନବାବୁ ଥରେ ଉତ୍କଳ ସାହିତ୍ୟରେ ଲେଖିଥିଲେ ଯେ, ପ୍ୟାରୀବାବୁ ଢେଙ୍କାନାଳ ରାଜ-ଶିକ୍ଷକ ଥିବା ସମୟରେ ଷ୍ଟେଟ୍‌ର ବଡ଼ ବଡ଼ କର୍ମଚାରୀମାନଙ୍କ ଆମୋଦ ଆହ୍ଲାଦରେ ସେ ସର୍ବଦା ଉପସ୍ଥିତ ଥାନ୍ତି; କିନ୍ତୁ ସେ ସବୁ ବିଷୟରେ ନିର୍ଲିପ୍ତ ।

ଆଉ ଗୋଟିଏ ଉଦାହରଣରୁ ପାଠକ ପାଠିକାମାନେ ତାହାଙ୍କ ବିଷୟରେ କିଛି ଅବଗତ ହେବେ । ପ୍ୟାରୀବାବୁ ଯେଉଁଠିକୁ ଗସ୍ତରେ ଯାନ୍ତୁ, ସେ ପଇସା ନଦେଇ କାହାରିଠାରୁ ଖଣ୍ଡିଏ କଦଳୀପତ୍ର ବା ଅନ୍ୟାନ୍ୟ ଲବଣ ପର୍ଯ୍ୟନ୍ତ ଗ୍ରହଣ କରନ୍ତି ନାହିଁ ବା ଭୃତ୍ୟମାନଙ୍କୁ ଗ୍ରହଣ କରି ଦିଅନ୍ତି ନାହିଁ । ଏଥିରେ ଭୃତ୍ୟମାନଙ୍କ ଉତ୍କୋଚ ଗ୍ରହଣ କରିବାର ପଥ ରୁଦ୍ଧ ଥିଲା । ସେମାନେ ଥରେ ଏହାର ପ୍ରତିକାର ଚିନ୍ତା କଲେ । ଅଗତ୍ୟା ସେମାନଙ୍କୁ ଗୋଟାଏ କୁଚକ୍ରର ପ୍ରଶ୍ରୟ ଗ୍ରହଣ କରିବାକୁ ହେଲା । ପ୍ୟାରୀବାବୁ ଯାଜପୁର ଅଞ୍ଚଳକୁ ଯଇ ଗୋଟିଏ ସ୍କୁଲ ଗୃହରେ ଥାନ୍ତି । ସେତେବେଳେ ତାଙ୍କର ପୂର୍ଣ୍ଣ ଯୌବନ । ଭୃତ୍ୟମାନେ ଚରିତ୍ରହୀନା ଏକ ରୂପବତୀ ଯୁବତୀ ଉପରେ ପ୍ୟାରୀମୋହନଙ୍କ ଚରିତ୍ର ନଷ୍ଟ କରିବାର ଭାର ଦେଲେ । ସେ ଯୁବତୀ ମଧ୍ୟ କେତେ ବଡ଼ ବଡ଼ ଲୋକଙ୍କୁ ନିଜର ରୂପ-ଜାଲରେ ଆବଦ୍ଧ କରିଅଛି ବୋଲି ଆସ୍ଫାଳନ କରିବାକୁ ଲାଗିଲା । ଯାହାହେଉ, ଭୃତ୍ୟମାନେ ରାତ୍ରି ପ୍ରାୟ ୯ଟା ବେଳକୁ ବିଭିନ୍ନ କାର୍ଯ୍ୟର ଛଳନାରେ ବାବୁଙ୍କୁ ଏକାକି ରଖି ଦୂରକୁ ଚାଲିଗଲେ ।

ଅନ୍ଧକାର ରାତ୍ରି ମଧ୍ୟରେ ଉକ୍ତ ରୂପଜୀବୀ ନାନା ବେଶ ବିନ୍ୟାସ କରି ସୁବାସିତ ତାମ୍ବୁଳ ସହିତ ଉପସ୍ଥିତ ହେଲା । ପ୍ୟାରୀବାବୁ ସେତେବେଳକୁ ସରକାରୀ କାର୍ଯ୍ୟରେ ବ୍ୟସ୍ତ । ସେ ପ୍ୟାରୀବାବୁଙ୍କ ନିକଟରେ ତାମ୍ବୁଳ ରଖିଦେବା ମାତ୍ରେ ବାବୁ ମହୋଦୟ ତାର ଆଗମନର କାରଣ ପଚାରିଲେ । ସେ ଉତ୍ତର କଲା, "ମୁଁ ଆପଣଙ୍କ ପଦସେବା କରିବାକୁ ଆସିଅଛି ।" ପ୍ୟାରୀବାବୁ ତାର ଦୁରଭିସନ୍ଧି ବୁଝିପାରି ଚାକର ଓ ପୂଝାରୀଙ୍କି ଉଚ୍ଚୈଃସ୍ୱରରେ ଡାକିବାକୁ ଲାଗିଲେ, କିନ୍ତୁ ସେମାନେ କାହାନ୍ତି ? ଭୃତ୍ୟମାନଙ୍କ କୁଚକ୍ର ବୁଝିବାକୁ ପ୍ୟାରୀବାବୁଙ୍କ ବିଳମ୍ବ ହେଲାନାହିଁ । ସେ 'ଏଠାରୁ ବାହାର ବାହାର', ବୋଲି ଘନ ଘନ ଗର୍ଜନ କରିବାକୁ ଲାଗିଲେ । ଭୟ ଓ କାମର ଏକତ୍ରବାସ ଅସମ୍ଭବ । ତେଣୁ ଉକ୍ତ ରୂପଯୌବନ ଗର୍ବିତା କାମିନୀ ଆପଣାକୁ ଅପରାଧୀ ମନେକରି ନିଜ ଗୃହକୁ ଫେରିଗଲା । ଭୃତ୍ୟମାନେ ସେମାନଙ୍କ ଷଡ଼ଯନ୍ତ୍ର ବିଫଳ ହେବାର ସଂବାଦ ତାହାଠାରୁ ପାଇ ଭୟରେ ବିହ୍ୱଳ ହେଲେ ।

କିଛି କ୍ଷଣ ପରେ ସେମାନେ ଜଣ ଜଣ କରି ଲେଉଟି ଆସିଲେ । ପ୍ୟାରୀବାବୁ ସେମାନଙ୍କୁ ସମ୍ମୁଖକୁ ଡାକି ସେମାନଙ୍କର ଗର୍ହିତ ଆଚରଣ ଯୋଗୁଁ ଭର୍ତ୍ସନା କରିବା ସଙ୍ଗେ ସଙ୍ଗେ ଅର୍ଥଦଣ୍ଡ ମଧ୍ୟ କଲେ । ପୁଝାରୀ, ଚାକର ଓ ଚପରାଶି ପ୍ରତ୍ୟେକଙ୍କୁ ଟ ୦୫ ଲେଖାଏଁ ଅର୍ଥଦଣ୍ଡ କରାଗଲା । ସେ ଏହି ଜୋରିମାନା ସେମାନଙ୍କ ମାସିକ ବେତନରୁ ଆଦାୟ କଲେ । କିନ୍ତୁ ଆଦାୟ କରିବାର ସାତଦିନ ପରେ ସେମାନଙ୍କ ନିଜ ଦୋଷ ସ୍ୱୀକାର କରି ଅନୁତପ୍ତ ହେବାରୁ ସେ ସଦୟ ହୋଇ ନିଜ ହାତରୁ ଉକ୍ତ ଅର୍ଥ ସେମାନଙ୍କୁ ପ୍ରତ୍ୟାର୍ପଣ କଲେ ।

ମୁଁ ମୋର ପିତାମହୀ- ପ୍ୟାରୀବାବୁଙ୍କ ଜ୍ୟେଷ୍ଠା ଭଗିନୀଙ୍କୁ ଥରେ ପ୍ରଶ୍ନ କରିଥିଲି, "ତୁମ ଜାଣିବାରେ ବା ଶୁଣିବାରେ ଅଜା (ପ୍ୟାରୀବାବୁ) ଙ୍କ କେବେହେଲେ ଚରିତ୍ରସ୍ଖଳନ ହୋଇଥିଲା କି ?" ସେ ମୋ ପ୍ରଶ୍ନର ଉତ୍ତରରେ କହିଲେ, ପ୍ୟାରୀର ଚରିତ୍ର ଚିରକାଳ ନିର୍ମଳ । ପିଲାଦିନେ ସେ ଖୁବ୍ ଭଲଥିଲା । ଯେତେବେଳେ ତା'ର ଭରା ଯୌବନ, ଯେତେବେଳେ ଯୁବକମାନଙ୍କ ଚରିତ୍ର ପ୍ରାୟ ଦୂଷିତ ହେବାର ଦେଖାଯାଏ, ସେତେବେଳେ ତାହାଠାରେ କୌଣସି ପ୍ରକାର ଦୋଷ ଦେଖା ଯାଇ ନାହିଁ । ସେଭଳି ପୁରୁଷ ଦେଖାଯାନ୍ତି ନାହିଁ ।" ବୋଲିବା ବାହୁଲ୍ୟ ଯେ ପ୍ୟାରୀବାବୁ ଯେପରି ସତ୍ୟନିଷ୍ଠ ଓ ସ୍ପଷ୍ଟବାଦୀ ଥିଲେ, ତାହାଙ୍କ ଭଗିନୀମାନେ ମଧ୍ୟ ତଦ୍ରୂପ ।

ପ୍ୟାରୀମୋହନ ପୁତ୍ର ଭୁବନ ମୋହନ ଥରେ ମୋତେ କହିଥିଲେ, "ମନୁଷ୍ୟ ଅନ୍ୟାନ୍ୟ ଲୋକ ନିକଟରେ ଯେତେ ସାଧୁତା ଦେଖାଇଲେ ମଧ୍ୟ, ସ୍ତ୍ରୀ ନିକଟରେ ସକଳ ପ୍ରକାର ଦୋଷ ଗୁଣ ଧରାପେଡ଼େ । ମୁଁ ମୋର ମାଁଙ୍କ ମୁହଁରୁ ଶୁଣିଛି ଯେ ମୋ ପିତାଙ୍କ ପରି ସଂଯତ ପୁରୁଷ ଦେଖିବା ତ ଦୂରର କଥା ସେ କେବେହେଁ ସେଭଳି ପୁରୁଷର କଥା ଶୁଣି ନାହାନ୍ତି ।"

ମାତୃବତ୍ ପରଦାରେଷୁ<br>
ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍,<br>
ଆତ୍ମବତ୍ ସର୍ବଭୁତେଷୁ<br>
ଯଃ ପଶ୍ୟତି ସ ପଣ୍ଡିତଃ ।

ପ୍ୟାରୀବାବୁ ଏହି ଅର୍ଥରେ ଯଥାର୍ଥ ପଣ୍ଡିତ ଥିଲେ । ଚାଣକ୍ୟଙ୍କ ଏହି ନୀତିକୁ ସେ ତଦୀୟ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ବାସ୍ତବରେ ତାଙ୍କପରି ନୀତି-ପରାୟଣ ସଂଯତ ବ୍ୟକ୍ତି ଉତ୍କଳରେ କାହିଁକି ପୃଥିବୀରେ ଅନଧିକ ।

ତାହାଙ୍କ ସଂଯମ ସହିତ ନିର୍ଲୋଭତା ଘନିଷ୍ଠଭାବରେ ସଂପୃକ୍ତ । ସେ କେବେହେଁ କାହାରି କୌଣସି ପଦାର୍ଥରେ ଲୋଭ କରିନାହାନ୍ତି । ଦିନେ ସେ ବନ୍ଧାକୋବି କିଣି ଆଣିବାକୁ ଚପରାଶିକୁ ପଇସା ଦେଲେ । ସେ ବଜାରରେ କୋବି ନ ପାଇ ଫେରି ଯାଉଥିଲା । ଏହା ଦେଖି ତାହାଙ୍କ ଅଧିନ କର୍ମଚାରୀ ବାବୁ ଭଗବାନ ଚନ୍ଦ୍ର ସିଂହ ତାଙ୍କ ନିଜ ବଗିଚାରୁ ଦୁଇ ଗୋଟି ବଡ଼ ବନ୍ଧାକୋବି ଚପରାଶି ହସ୍ତରେ ଦେଲେ । ପ୍ୟାରୀବାବୁ କୋବିଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ କୋବିର ମୂଲ୍ୟ ପଚାରିବାରୁ, ଚପରାଶି କହିଲା, "ପଇସା ପଡ଼ି ନାହିଁ, ଭଗବାନ ବାବୁ ଏ କୋବି ଦେଇଅଛନ୍ତି ।" ଏଥିରେ ଚପରାଶି ଉପରେ ବିରକ୍ତ ହୋଇ ନୀରବ ରହିଲେ ଏବଂ ଦିନେ କୌଶଳକ୍ରମେ ଭଗବାନ ବାବୁଙ୍କ ଉଦ୍ୟାନ ଦେଖିବାକୁ ଆସିଲେ । ସେଠାରେ ସେ ପ୍ରକୃତ ଅବସ୍ଥା ଦେଖିଯାଇ ମନକଥା ମନରେ ରଖିଲେ, କିନ୍ତୁ ପ୍ରାୟ ତିନିମାସ ପର୍ଯ୍ୟନ୍ତ ନାନା ପନିପରିବା ଭଗବାନ ବାବୁଙ୍କ ଘରକୁ ପଠାଇବାକୁ ଲାଗିଲେ । ଭଗବାନ ବାବୁ ନିଜେ ସ୍ୱୀକାର କରିଅଛନ୍ତି ଯେ, ତାହାଙ୍କ ପ୍ରଦତ୍ତ କୋବିର ୨୪/୨୫ ଗୁଣ ମୂଲ୍ୟର ପଦାର୍ଥ ସେ ପ୍ୟାରୀ ବାବୁଙ୍କ ଠାରୁ ସ୍ନେହୋପହାର ସ୍ୱରୂପ ପାଇଥିଲେ । ଏହି ଘଟଣାରୁ କେବଳ ନିର୍ଲୋଭତା ନୁହେଁ, ପ୍ୟାରୀବାବୁଙ୍କ ଅନ୍ୟାନ୍ୟ କେତେକ ଗୁଣର ପରିଚୟ ପାଠକ ପାଠିକା ପାଇ ପାରିବେ ।

ଦାନଶୀଳତା ଏହାଙ୍କ ଅନ୍ୟ ଏକ ମହତ ଗୁଣ । ଆମ୍ଭେମାନେ ଏହି ଗୁଣ ସମ୍ପର୍କରେ ପୂର୍ବରୁ କିଛି କହିଅଛୁଁ । ବର୍ତ୍ତମାନ ବକ୍ତବ୍ୟ ଏହି ଯେ, ସେ ଅନ୍ଧ, ଖଞ୍ଜ ଓ ବିକଳାଙ୍ଗ ବ୍ୟକ୍ତିଙ୍କୁ ସାହାଯ୍ୟ କରୁଥିଲେ । ଦୁଃଖୀର ଦୁଃଖ ଦେଖିଲେ ତତ୍‌କ୍ଷଣାତ୍ ତାହାଙ୍କର ହୃଦୟ ବିଗଳିତ ହେଉଥିଲା । ପ୍ରତି ରବିବାର ସେ ଏମାନଙ୍କୁ ପଇସା ଓ ତଣ୍ଡୁଳ ବିତରଣ କରୁଥିଲେ । କେହି କୌଣସି ବିଷୟରେ ଦୁଃଖ ଜଣାଇଲେ ସେ ଅବସ୍ଥାର ଅନୁସନ୍ଧାନ କରି ସାଧ୍ୟାନୁଯାୟୀ ସାହାଯ୍ୟ କରୁଥିଲେ । ସୁତରାଂ ତାହାଙ୍କ ଦାନ ବିବେଚନାଶୂନ୍ୟ ନ ଥିଲା ।

ଦିନେ ଜଣେ ଭିକ୍ଷୁକ ଖଣ୍ଡିଏ ଛିଣ୍ଡା ଲୁଗା ପିନ୍ଧି ଗୀତ ଗାଉଥିଲା । ପ୍ୟାରୀମୋହନ ତାହାକୁ ସେହିକ୍ଷଣି ନିଜର ନୂଆ ପଖାଳ କରା ଧୋତୀ ପିନ୍ଧାଇଲେ ।

ଦୁଃଖୀର ଦୁଃଖରେ ସମବେଦନା ତାଙ୍କର ପ୍ରକୃତିଗତ ଥିଲା । ମୃତବ୍ୟକ୍ତିଙ୍କ ଆତ୍ମୀୟ ବନ୍ଧୁବାନ୍ଧବମାନଙ୍କ ସହିତ ସେ ସମଦୁଃଖ ପ୍ରକାଶ କରି ସେମାନଙ୍କୁ ନାନା ପ୍ରବୋଧ ବାକ୍ୟରେ ସାନ୍ତ୍ୱନା ଦେଉଥିଲେ । ସେ ବିଧବା ମାନଙ୍କ ଦୁଃଖ ଆଦୌ ସହ୍ୟ କରି ପାରୁ ନ ଥିଲେ । ତେଣୁ ସେମାନଙ୍କୁ ଯଥାଶକ୍ତି ସାହାଯ୍ୟ କରୁଥିଲେ । ସେ ଯେଉଁଠାରେ ଜଳ କଷ୍ଟ ଦେଖୁଥିଲେ, ସେଠାରେ ତାହାର ପ୍ରତିକାର କରୁଥିଲେ । ଆଜି ପର୍ଯ୍ୟନ୍ତ ତାହାଙ୍କ ଖୋଦିତ କୂପମାନ ଗ୍ରାମର ଅଦୂରବର୍ତ୍ତୀ ପାଣସାହୀ ଓ ଚଷାସାହିମାନଙ୍କରେ ବର୍ତ୍ତମାନ । ଦରିଦ୍ର ଛାତ୍ରମାନଙ୍କ ଦାରିଦ୍ର୍ୟ ଦୁଃଖ ଦୂର କରିବା ପାଇଁ ସେ ସତତ ବ୍ରତୀ ଥିଲେ । ସେ ନିଜର କଟକସ୍ଥ ବାସଗୃହରେ ୧୦/୧୨ଟି ଛାତ୍ର ରଖି ସେମାନଙ୍କର ଗ୍ରାସାଚ୍ଛାଦନ ଓ ଶିକ୍ଷାର ଭାର ଗ୍ରହଣ କରିଥିଲେ । ପିତାଙ୍କଠାରୁ ସୁଯୋଗ୍ୟ ପୁତ୍ରଠାରେ ଏହି ଦିବ୍ୟଗୁଣ ପ୍ରବର୍ତ୍ତି ଥିଲା ।

ସେ ବାହ୍ୟତଃ କଠୋର ଥିଲେ ମଧ୍ୟ ତାହାଙ୍କ ହୃଦୟ କୋମଳ ଓ ଦୟାପୂର୍ଣ୍ଣ ଥିଲା । ନାରିକେଳର ବହିର୍ଭାଗ ଯେପରି କର୍କଶ ଏବଂ ଭିତର ସରସ, ପ୍ୟାରୀବାବୁଙ୍କ ହୃଦୟର ଭିତର ଓ ବାହାର ସେହିପରି ଥିଲା । ଦିନେ ଗୋଟିଏ ଦରିଦ୍ରା ସ୍ତ୍ରୀଲୋକର ସାତବର୍ଷର କନ୍ୟା ଅଧଲାଟିକର ଲୁଣ କିଣିବାକୁ ଯାଇ ଅଧଲାଟି ହଜାଇ ଦେଲା । ମାତାଙ୍କଠାରୁ ପ୍ରହାର ପାଇବା ଭୟରେ ପଥରେ ବସି ବିକଳ ଭାବରେ କାନ୍ଦୁଥିଲା । ପ୍ୟାରୀବାବୁ ସମସ୍ତ ବିଷୟ ଜାଣି ବାଳିକାକୁ ଲୁଣ କିଣି ଦେଇ ଅନ୍ୟକିଛି କିଣିବା ପାଇଁ ଆଉ ଦୁଇଟି ପଇସା ଦେଇଥିଲେ । ସାହାଯ୍ୟ ସ୍ୱଳ୍ପ ହେଲେ ମଧ୍ୟ ପ୍ରବୃତ୍ତି ମହତ୍ ।

ଥରେ ରୟାଲ ବେଙ୍ଗଲ ଥିଏଟର କଟକ ସହରକୁ ଆସିଥାଏ । ପ୍ୟାରୀମୋହନ କେବେହେଁ ଥିଏଟର ଦେଖନ୍ତି ନାହିଁ, କିନ୍ତୁ ନିଜର ଅଧୀନ ତିନିଜଣ କର୍ମଚାରୀଙ୍କୁ ଥିଏଟର ଦେଖିବା ନିମିତ୍ତ ଆନ୍ତରିକ ବାସନା ଥିବାର ଜାଣିପାରି ସେମାନେ ସ୍ୱଳ୍ପ ବେତନଭୋଗୀ ଥିବାରୁ ପ୍ରତ୍ୟେକଙ୍କୁ ଏକ ଟଙ୍କା ଲେଖାଏ ଦେଇ କହିଲେ, "ତୁମ୍ଭେମାନେ ଆଜି ଥିଏଟର ଦେଖି କାଲି ମୋ ପାଖରେ ସବୁ ବିଷୟ କହିବ ।" ସେମାନେ ମହାଆନନ୍ଦରେ ଥିଏଟର ଦେଖି ଆସି ବାବୁଙ୍କ ନିକଟରେ ତାହାର ବିଷଦ ବର୍ଣ୍ଣନା କରିଥିଲେ । ବୋଲିବା ବାହୁଲ୍ୟ ଯେ,ଥରେ ତାହାଙ୍କ ଆଶ୍ରିତ କତିପୟ ଛାତ୍ର ଥିଏଟର ଦେଖି ତାହାଙ୍କଠାରୁ ଭର୍ତ୍ସନା ପାଇଥିଲେ ।

ସତ୍ୟନିଷ୍ଠା ଏହାଙ୍କ ପ୍ରଧାନ ଗୁଣମାନଙ୍କ ମଧ୍ୟରୁ ଅନ୍ୟତମ । ସେ ନିଜେ ସତ୍ୟପ୍ରିୟ ଥିଲେ । ତେଣୁ ଅସତ୍ୟ ଓ ମିଥ୍ୟାବାଦୀ ଲୋକକୁ ସେ ଅନ୍ତରର ସହିତ ଘୃଣା କରୁଥିଲେ । ସତ୍ ଛଡ଼ା ଅସତ୍ ଭାବ ତାହାଙ୍କ ଜୀବନରେ ନଥିଲା ବୋଲି କହିଲେ ଚଳେ । ସେ ଯାହାକୁ ଯାହା କହୁଥିଲେ ତାହା ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । କାହାକୁ ଆଶା ଦେଇ ପ୍ରବଞ୍ଚନା କରିବା ତାହାଙ୍କ ପ୍ରକୃତି ବିରୁଦ୍ଧ ଥିଲା । ରାଜ ଦରବାରରେ କେବଳ ସତ୍ୟପାଇଁ ସେ ଅର୍ଥହାନି ସହ୍ୟ କରିଅଛନ୍ତି- କିନ୍ତୁ କଦାପି ମିଥ୍ୟାର ପ୍ରଶ୍ରୟ ନେଇ ନାହାନ୍ତି ।

ପ୍ୟାରୀବାବୁ ଜଣେ ସ୍ପଷ୍ଟବାଦୀ ଲୋକଥିଲେ । ସ୍ପଷ୍ଟ କଥା କହିବାରେ ସେ ସଂପୂର୍ଣ୍ଣ ନିର୍ଭୀକ । ଉପରିସ୍ଥ ଓ ଅଧୀନ କର୍ମଚାରୀମାନେ , ଏପରିକି ତାହାଙ୍କ ସ୍ତ୍ରୀ ପର୍ଯ୍ୟନ୍ତ ତାହାଙ୍କ ସ୍ପଷ୍ଟବାଦୀତା ଅନୁଭବ କରୁଥିଲେ । ଏ ସଂସାରରେ ଯେଉଁଠାରେ ଚରିତ୍ରର ସଂପୂର୍ଣ୍ଣ ବିଶୁଦ୍ଧତା , ସେହିଠାରେ ନିର୍ଭୀକତା ଓ ସ୍ପଷ୍ଟବାଦୀତା । କୌଣସି ସମୟରେ ତାହାଙ୍କ ସ୍ତ୍ରୀ ତାହାଙ୍କ ନିକଟରେ ପରିବାରସ୍ଥ କାହାରି ନିନ୍ଦା କଲେ ପ୍ୟାରୀବାବୁ ଦୁଇ ବ୍ୟକ୍ତିଙ୍କୁ ସମ୍ମୁଖକୁ ଡାକି ପ୍ରକୃତ ଘଟଣା ବୁଝି ନେଉଥିଲେ । ସେଥିରେ ଆଦୌ ତାହାଙ୍କର କୁଣ୍ଠା ଦେଖାଯାଇନାହିଁ ।ନିଜେ ଉଚିତ ମନେ ନକଲେ, କାହାରି ଅନୁରୋଧ ବା ଉପରୋଧରେ ପଡ଼ି ସେ କୌଣସି କାର୍ଯ୍ୟ କରୁ ନଥିଲେ । ନିରନ୍ତର ନ୍ୟାୟ ପଥରେ ଥିବା ହେତୁ କାହାରି ପ୍ରତି ସେ ଚକ୍ଷୁର୍ଲଜ୍ଜା ରଖୁ ନଥିଲେ ।

ପ୍ୟାରୀବାବୁ ଜଣେ ଗୁଣଗ୍ରାହୀ ପୁରୁଷ ଥିଲେ । ସେ ନିଜେ ସାଧୁ; ତେଣୁ ସାଧୁବ୍ୟକ୍ତି ପ୍ରତି ସର୍ବଦା ଆକୃଷ୍ଟ । ଥରେ ସେ କାନପୁର ମେଟ୍‌କାଫ ମି.ଇ. ସ୍କୁଲ

ପରିଦର୍ଶନ କରିବାକୁ ଯାଇଥିଲେ । ସେ ସମୟରେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ସେ ସ୍କୁଲରେ ହେଡପଣ୍ଡିତ ଥାନ୍ତି । ପଣ୍ଡିତ ମହୋଦୟ ନିଜର ଚରିତ୍ରବଳରେ ଛାତ୍ରମାନଙ୍କ ତଥା ଅନ୍ୟାନ୍ୟ ବ୍ୟକ୍ତିଙ୍କ ଶ୍ରଦ୍ଧାର ପାତ୍ର ହୋଇଥାନ୍ତି । ବାବୁ ମହୋଦୟଙ୍କ ସ୍କୁଲ୍ ପରିଦର୍ଶନ ସମୟରେ ସେ ପୀଡ଼ିତ ହୋଇ ଗୃହରେ ଥିଲେ । ପ୍ୟାରୀମୋହନ ସ୍କୁଲ ପରିଦର୍ଶନାନ୍ତେ କହିଲେ, "ମୁଁ ଗୋପୀନାଥ ବାବୁଙ୍କ ସହିତ ସାକ୍ଷାତ ନ କରି ଏ ସ୍ଥାନ ପରିତ୍ୟାଗ କରି ପାରିବି ନାହିଁ ।" ତହୁଁ ସେ ଗୋପୀନାଥ ପଣ୍ଡିତଙ୍କ ଗୃହକୁ ଯାଇ ତାହାଙ୍କ ସହିତ ସାକ୍ଷାତ୍ କଲେ ।

ତାହାଙ୍କଠାରେ ଲୋକ-ପ୍ରୀତି ଥିଲା । ସେ ସାଧୁ ଓ ଶିକ୍ଷିତ ବ୍ୟକ୍ତିଙ୍କ ସହିତ ସଦ୍ୱାଳାପ କରିବାରେ ଆନନ୍ଦ ଅନୁଭବ କରୁଥିଲେ । ନିଜର ପରିଚିତ ଓ ଆତ୍ମୀୟବର୍ଗଙ୍କୁ ପ୍ରତିବର୍ଷ ରାସଯାତ୍ରା ସମୟରେ ନିମନ୍ତ୍ରଣ କରି ସେ ଯେପରି ଯତ୍ନ ପୂର୍ବକ ଚର୍ଚ୍ଚା କରୁଥିଲେ ତାହା ତାହାଙ୍କର ସାମାଜିକତାର ନିଦର୍ଶନ । କିନ୍ତୁ ମିଥ୍ୟାବାଦୀ, ଅଳସ, ଚରିତ୍ରହୀନ, ମାଦକ ଦ୍ରବ୍ୟରେ ଆଶକ୍ତ ବ୍ୟକ୍ତିଙ୍କ ପ୍ରତି ତାହାଙ୍କ ପ୍ରୀତି ତେଣିକି ଥାଉ, ବିରକ୍ତି ଓ କ୍ରୋଧ ଥିଲା । ସେ ନିଜ ଜୀବନରେ କଦାପି କୌଣସି ମାଦକ ଦ୍ରବ୍ୟ ବ୍ୟବହାର କରି ନାହାନ୍ତି ବା କେହି କେବେହେଁ ତାହାଙ୍କୁ ଖଣ୍ଡିଏ ତାମ୍ବୁଳ ଚର୍ବଣ କରିବାର ଦେଖିନାହିଁ ।

କୌଣସି ବ୍ୟକ୍ତିଙ୍କ ମହତ୍ୱ ତାହାଙ୍କ ଭୃତ୍ୟ ପ୍ରତି ବ୍ୟବହାରରୁ ଜଣାଯାଏ । ପ୍ୟାରୀମୋହନ ନିଜର ଭୃତ୍ୟମାନଙ୍କ ପ୍ରତି ନ୍ୟାୟସଙ୍ଗତ ବ୍ୟବହାର କରୁଥିଲେ । ସେହି ନ୍ୟାୟପରତା ସହିତ ଦୟା ମିଶ୍ରିତ ଥିଲା-କିନ୍ତୁ ତାହାଙ୍କ ଦୟା କୌଣସି ଦୁଷ୍କର୍ମରେ ପ୍ରଶୟ ଦେଉ ନ ଥିଲା । ଭୃତ୍ୟମାନଙ୍କ ମଧ୍ୟରୁ କାହାରି ବିପଦ ଉପସ୍ଥିତ ହେବାର ଜାଣିଲେ ସେ ଉଚିତ ସାହାଯ୍ୟ କରୁଥିଲେ । ସେମାନେ ପୀଡ଼ତ ହେଲେ ସେ ବିଶିଷ୍ଟ ଯତ୍ନ ନେଉଥିଲେ । ଆଉ ଗୋଟିଏ ଘଟଣାରୁ ତାହାଙ୍କ ଭୃତ୍ୟ ପ୍ରତି ବ୍ୟବହାରର ସଙ୍କେତ ମିଳିବ । ଥରେ ତାହାଙ୍କ ଜଣେ ଗୁମାସ୍ତା ଜମିଦାରୀର ତହବିଲରୁ ଟ୫୦/-ଆତ୍ମସାତ୍ କରିଥାନ୍ତି । ତାହାଙ୍କ ପ୍ରତି କି ବିଚାର କରାଯିବ ଏହି ବିଷୟରେ ଆନ୍ଦୋଳନ ଲାଗିଲା । କେହି କହିଲେ- ତାହାଙ୍କୁ ଚାକିରୀରୁ ବିଦାୟ ଦେବା ଉଚିତ୍; କେହି କହିଲେ ତାହାଙ୍କ ବେତନରୁ ଉକ୍ତ ଟଙ୍କା ଆଦାୟ କରିବା ଶ୍ରେୟସ୍କର । ପ୍ୟାରୀବାବୁ କହିଲେ ଯେ ବେତନ ଅଳ୍ପ ଥିବାରୁ ସେ ସେତକ ଟଙ୍କା ଆତ୍ମସାତ୍ କରିଛନ୍ତି । ଅତଏବ ତାହାଙ୍କ ବେତନ ଟ ୪ ରୁ ଟ ୬କରି ଦିଆଯାଉ

ଏବଂ ସେହି ଟ ୬ ରୁ ପ୍ରତିମାସରେ ଟ ୧/- ଲେଖାଏଁ କାଟି ରଖାଯାଉ । ପ୍ୟାରୀବାବୁଙ୍କ ଏହି ବିଚାରରେ ପରିବାରର ଏବଂ ଜମିଦାରୀ ଲୋକେ ସନ୍ତୁଷ୍ଟ ହେଲେ । ଉକ୍ତ ଗୁମାସ୍ତା ଏବଂ ବିଚାରରେ ମୁଗ୍ଧ ହୋଇ ଆଉ କେବେ ସେପରି ଆଚରଣ କରିନାହାନ୍ତି ।

ଇତର ଜୀବମାନଙ୍କ ପ୍ରତି ତାହାଙ୍କ ପ୍ରୀତି ଦେଖା ଯାଇଅଛି । ସେ ପାରାବତ ଓ ମୟୂର ପୋଶିଥିଲେ ଓ ସେମାନଙ୍କ ପ୍ରତି ତାହାଙ୍କ ଯଥେଷ୍ଟ ଯତ୍ନ ଥିଲା ।

ସେ ଇଂରାଜୀ, ଓଡ଼ିଆ ଓ ବଙ୍ଗଳା ପୁସ୍ତକମାନ ପାଠ କରୁଥଲେ । ହୋମିଓପ୍ୟାଥିକ ଔଷଧ ସମ୍ବନ୍ଧୀୟ ବହୁ ଇଂରାଜୀ ପୁସ୍ତକ ତାହାଙ୍କ ଅଧ୍ୟୟନର ବିଷୟ ଥିଲା । ପୌରାଣିକ ବିଷୟ ଓ ଦେଶ ବିଦେଶର ଲୋକମାନଙ୍କ ରୀତି ନୀତି ଏବଂ ଆଚାର ବ୍ୟବହାର ବିଷୟକ ପୁସ୍ତକମାନଙ୍କରେ ତାହାଙ୍କ ପ୍ରବୃତ୍ତ ଥିଲା । ସେ ସତ୍‌ପ୍ରସଙ୍ଗ ସମ୍ବନ୍ଧୀୟ ଗଳ୍ପ ଶୁଣିବାକୁ ଭଲ ପାଉଥିଲେ । କୌଣସି ଦୃଷ୍ଟାନ୍ତ ଦେବା ସମୟରେ ଲୋକଙ୍କୁ ତତ୍ ବିଷୟକ ଗଳ୍ପ ଶୁଣାଉଥିଲେ ।

ଶିକ୍ଷା ପ୍ରତି ତାହାଙ୍କ ଯଥେଷ୍ଟ ଆଗ୍ରହ ଥିଲା । କି ସ୍ୱଜାତି କି ଭିନ୍ନ ଜାତିର ଛାତ୍ରମାନଙ୍କୁ ସେ ଯଥେଷ୍ଟ ସାହାଯ୍ୟ କରୁଥିଲେ । କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ସେ ବହୁସ୍ଥଳରେ ସେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟମାନ ପ୍ରତିଷ୍ଠିତ କରିଅଛନ୍ତି । ତାହାଙ୍କ ଗ୍ରାମସ୍ଥ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ତାହାଙ୍କ ଯତ୍ନର ଫଳ । ସେ କଟକ, ପୁରୀ ଓ ବାଲେଶ୍ୱରରେ ଯେକୌଣସି ସ୍କୁଲରେ ଦରିଦ୍ର ଛାତ୍ର ଦେଖିଛନ୍ତି, ତାହାର ଶିକ୍ଷାର ବନ୍ଦୋବସ୍ତ କରିଅଛନ୍ତି ଏବଂ ପ୍ରତିମାସରେ ବହୁ ସ୍କୁଲ ଛାତ୍ର ତାହାଙ୍କ ଠାରୁ ମାସିକ ସ୍କୁଲ ବେତନ ପାଉଥିଲେ । ଥରେ ସେ ନିଜର ପୁରୋହିତ ପୁତ୍ରଙ୍କୁ ଶ୍ଳୋକ ମୁଖସ୍ଥ କରିବା ପାଇଁ ଶ୍ରୀଯୁକ୍ତ ଗୋବିନ୍ଦ ମହାପାତ୍ର ନାମକ ଜନୈକ ପଣ୍ଡିତଙ୍କୁ ନିଯୁକ୍ତ କରିଥିଲେ । ପଣ୍ଡିତଙ୍କ ସହିତ ଏହି ସର୍ତ୍ତ ଥିଲା ଯେ ଛାତ୍ର ଗୋଟିଏ ଶ୍ଳୋକ ସମ୍ପୂର୍ଣ୍ଣ ରୂପେ କହିପାରିଲେ ସେ ଏକ ପଇସା ଏବଂ ଅସମ୍ପୂର୍ଣ୍ଣ ଭାବରେ କହିଲେ ଅଧଲାଏ ପାଇବେ । ସେ ନିଜର ସର୍ତ୍ତାନୁଯାୟୀ ପଣ୍ଡିତଙ୍କ ପ୍ରାପ୍ୟ ତାହାଙ୍କୁ ପ୍ରଦାନ କରିଥିଲେ ।

ଇଂରାଜୀ ବ୍ୟତୀତ ସେ ଓଡ଼ିଆରେ ଉତ୍ତମ ରୂପେ ଲେଖି ଜାଣୁ ଥିଲେ । ଓଡ଼ିଆ ସାହିତ୍ୟ ଓ ବ୍ୟାକରଣରେ ତାହାଙ୍କ ବିଶେଷ ପାରଦର୍ଶିତା ଥିଲା । ସେ କେତଖଣ୍ଡ

ପୁସ୍ତକ ରଚନା କରି ପ୍ରକାଶ କରିଥିଲେ । ସେ ଖଣ୍ଡିଏ ଭାଷା-ବ୍ୟାକରଣ ରଚନା କରିଥିଲେ । ତାହା ୧୮୮୦ ସାଲରେ ଛାତ୍ରବୃତ୍ତି ପରୀକ୍ଷା ନିମିତ୍ତ ପାଠ୍ୟରୂପେ ନିର୍ବାଚିତ ହୋଇଥିଲା । ପୁସ୍ତକ ରଚନାରେ ତାହାଙ୍କ ତତ୍ପରତା ନଦେଖି ବ୍ୟାସକବି ଫକୀରମୋହନ ତାହାଙ୍କ ଉତ୍କଳ-ଭ୍ରମଣରେ ଯାହା ଲେଖିଛନ୍ତି, ସେଥିରୁ ପ୍ୟାରୀବାବୁଙ୍କ ଚରିତ୍ର ସମ୍ବନ୍ଧରେ ମଧ୍ଯ ତାହାଙ୍କ ମତାମତ ଆମ୍ଭେମାନେ ଜାଣି ପାରୁଁ । ଉତ୍କଳ- ଭ୍ରମଣର ୧୯୧୬ ଖ୍ରୀଷ୍ଟାବ୍ଦ ସଂସ୍କରଣର ୨୩ ପୃଷ୍ଠାରେ ଲିଖିତ ଅଛି,-

"ଡେପୋଟି ଇନିସ୍‌ପେକ୍‌ଟର ପିଆରୀସେନ<br>
ଛାପାଖାନାଠାକୁ ଆଉ ଆସୁନାହିଁ କେନ ?<br>
ଖଣ୍ଡେ ଚଟିବହି ଲେଖି ପଡ଼ିଲକି ଥକି,<br>
ଏତେ ଅଳସୁଆ ହେଲେ କାମ ଚଳିବକି ?<br>
ତୁମସରି କେହି ନାହିଁ ଖାଣ୍ଟି ଲୋକ ଜଣେ,<br>
ମିଷ୍ଟଭାଷୀ ସଦାଶୟ ସାଧୁ ଭଦ୍ର ପଣେ ।<br>
ଦୁଇ ଚାରିଖଣ୍ଡ ପୋଥି ଲେଖି ପକା ଭାଇ,<br>
ଯାଅ ଯାଅ My friend Good bye good bye"

ପ୍ୟାରୀବାବୁ ପୁସ୍ତକ ଲେଖିବା ବିଷୟରେ ଆଳସ୍ୟ ଦେଖାଇ ପାରିଥାନ୍ତି, କିନ୍ତୁ ସେ କଦାପି ଅଳସୁଆ ନ ଥିଲେ । ଉପଯୁକ୍ତ ପଂକ୍ତି କତିପୟରୁ ଏବଂ ଏହି ପୁସ୍ତକର୍ ବର୍ଣ୍ଣିତ ଅନ୍ୟାନ୍ୟ ଘଟଣା ମାନଙ୍କରୁ ଦେଖାଯିବ ଯେ ଯେଉଁ ଶିକ୍ଷିତ ବ୍ୟକ୍ତିମାନେ ପ୍ୟାରୀବାବୁଙ୍କ ସମସାମୟିକ, ସେମାନେ ମଧ୍ଯ ତାହାଙ୍କୁ 'ସାଧୁ' ଆଖ୍ୟା ଦେଇଅଛନ୍ତି । ସଙ୍ଗୀତ ଶ୍ରବଣରେ ତାହାଙ୍କ ପ୍ରୀତିଥିଲା; କିନ୍ତୁ ଛାନ୍ଦ ଶୁଣିବାରେ ସେ ଅଧିତର ଆନନ୍ଦଲାଭ କରୁଥିଲେ ।

ଆମ୍ଭେମାନେ ପ୍ୟାରୀମୋହନଙ୍କ କେତେକ ଗୁଣସମ୍ବନ୍ଧରେ ଆଲୋଚନା କରିଅଛୁଁ । ବର୍ତ୍ତମାନ ତାହାଙ୍କ ଦୈନନ୍ଦିନ ଅଭ୍ୟାସ ସମ୍ବନ୍ଧରେ ପଦେ ଅଧେ କହିଲେ ତାହାଙ୍କର ଆଉ କେତେଗୋଟି ଗୁଣ ମଧ୍ୟ ବ୍ୟକ୍ତ ହେବ । ସେ ପିତାଙ୍କ ପରି ଅତିପ୍ରତ୍ୟୁଷରୁ ଗାତ୍ରୋତ୍‌ଥାନ କରୁଥିଲେ । ଶୌଚାଦି କର୍ମ ସମାପନାନ୍ତେ ପ୍ରାତଃସ୍ନାନର ବିଧି ଥିଲା । ସେ ସ୍ନାନାନ୍ତେ ପୂଜା ଓ ଆହ୍ନିକ କାର୍ଯ୍ୟ ତନ୍ମୟ ଚିତ୍ତରେ ସମ୍ପାଦନ କରୁଥିଲେ । ସ୍ନାନରୁ ବାହୁଡ଼ିଲାବେଳେ ସେ କାହାରି ସହିତ ବାକ୍ୟାଳାପ କରନ୍ତି ନାହିଁ । ଇଷ୍ଟଦେବଙ୍କ ଆରାଧନାଦି ପରେ ମିଶ୍ରି ସରବତ୍ ପାନ କରି ସେ ତାହାଙ୍କ ବୈଠକଖାନାକୁ ଆସୁଥିଲେ । ଏହି ସମୟରେ ସେ ତାମ୍ବୁଳ ପରିବର୍ତ୍ତେ

ହରିତକୀ ସେବନ କରୁଥିଲେ । ସେ ଜୀବନରେ କଦାପି ତାମ୍ବୁଲ ଚର୍ବଣ କରି ନାହାନ୍ତି । ସେ ହେଡ୍ କ୍ୱାଟରରେ ଥିବା ସମୟରେ ପ୍ରାୟ ନିଜ ଗୃହରେ ଅଫିସ୍ କାର୍ଯ୍ୟ ସମ୍ପାଦନ କରୁଥିଲେ । ସେତେବେଳେ କେତେଲୋକ ତାହାଙ୍କ ସହିତ ସାକ୍ଷାତ କରିବାକୁ ଯାନ୍ତି । ସଦାଳାପ ଦ୍ୱାରା ତାଙ୍କର ବହୁମୂଲ୍ୟ ସମୟ ଅପଚିତ ହେଲେହେଁ ସେ ତତ୍ ପ୍ରତି ଭୃକ୍ଷେପ କରନ୍ତି ନାହିଁ । ବୈଠକ ଖାନରେ ବସିବା ପରେ ରୋଗୀମାନଙ୍କୁ ବିନା ମୂଲ୍ୟରେ ହୋମିଓପ୍ୟାଥିକ୍ ଔଷଧ ବିତରଣ ତାହାଙ୍କ ପ୍ରଥମ କାର୍ଯ୍ୟ ଥିଲା । ତତ୍‌ପରେ ସେ ଅନ୍ୟାନ୍ୟ କାର୍ଯ୍ୟରେ ହସ୍ତକ୍ଷେପ କରୁଥିଲେ । ଦ୍ୱିପ୍ରହର ସମୟରେ ଭୋଜନାନ୍ତେ ସେ ପ୍ରାୟ ଅର୍ଦ୍ଧଘଣ୍ଟା ବିଶ୍ରାମ କରୁଥିଲେ । ତତ୍‌ପରେ ସରକାରୀ କାର୍ଯ୍ୟରେ ଅପରାହ୍ଣ ୪।୫ ଟା ପର୍ଯ୍ୟନ୍ତ ସେ ବ୍ୟାପୃତ ରହୁଥିଲେ । ସାମାନ୍ୟ ଜଳଯୋଗ ପରେ ବନ୍ଧୁମାନଙ୍କ ସହିତ ମିଳନରେ ସନ୍ଧ୍ୟାକାଳ ଅତିବାହିତ ହେଉଥିଲା । ତତ୍‌ପରେ ସେ ଗୃହକୁ ପ୍ରତ୍ୟାବର୍ତ୍ତନ କରି ପୁତ୍ରର ଅଧ୍ୟାପନାରେ ନିବିଷ୍ଟ ରହୁଥିଲେ । ମଫସଲ ଗସ୍ତକୁ ଗଲାବେଳେ ହୋମିଓପ୍ୟାଥିକ୍ ଔଷଧ ବାକ୍‌ସ ତାହାଙ୍କ ସାଙ୍ଗରେ ଥାଏ । ପୀଡ଼ାଗସ୍ତ ବ୍ୟକ୍ତି ପ୍ରାଥନା କରିବା ମାତ୍ରକେ ସେ ତାହାକୁ ଔଷଧ ଦେଉଥିଲେ । ସେ ସ୍ୱାସ୍ଥ୍ୟରକ୍ଷାର ସମସ୍ତ କାର୍ଯ୍ୟ ସମ୍ପାଦନ କରୁଥିବାରୁ ସୁସ୍ଥ ଓ ସବଳ ଥିଲେ । ସେ ମିତାହାରୀ ଓ ମିତବ୍ୟୟୀ ଥିଲେ ।

ବେଶଭୂଷାରେ ତାହାଙ୍କର ଆଡ଼ମ୍ବର ଶୂନ୍ୟତା ପାଠକ ପାଠିକା ତାହାଙ୍କ ପ୍ରତିକୃତିରୁ ଦେଖି ପାରିବେ । ଯେତେବେଳେ ସ୍ୱଦେଶୀ ଆନ୍ଦୋଳନର ନାମ ଗନ୍ଧ ନ ଥିଲା, ଯେତେବେଳେ ବୈଦେଶିକ ଅନୁକରଣ ଚରମସୀମାରେ ଉପନୀତ ହୋଇଥିଲା, ପ୍ୟାରୀମୋହନ ସେତେବେଳେ ଓଡ଼ିଆ ତନ୍ତିଙ୍କ ଦ୍ୱାରା ପ୍ରସ୍ତୁତ ପଖାଳ କୋରା ଧୋତି ପରିଧାନ କରୁଥିଲେ । ଖଣ୍ଡିଏ ଅତି ସାଧାରଣ ଜାମା ଦ୍ୱାରା ସେ ନିଜ ଅଙ୍ଗକୁ ଆବୃତ୍ତ କରୁଥିଲେ । ବେକ ନିକଟର ଜାମା ପ୍ରାୟ ଖୋଲା ଥାଏ । ଜାମା ଉପରେ ଖଣ୍ଡିଏ ଉତ୍ତରୀୟ ବ୍ୟବହାର କରିବା ତାହାଙ୍କ ଚିରନ୍ତନ ଅଭ୍ୟାସ ଥିଲା ଏପରିକି କୌଣସି ଆତ୍ମୀୟଙ୍କୁ ଉତ୍ତରୀୟ ବର୍ଜିତ ଦେଖିଲେ ସେ ତାହାକୁ 'ଚାଦର ନିବାରଣୀ ସଭାର ସଭ୍ୟ' ବୋଲି ସମ୍ବୋଧନ କରୁଥିଲେ ।

ବର୍ତ୍ତମାନ ତାହାଙ୍କ ଧର୍ମ ଜୀବନ ଓ ଧର୍ମ ମତ ସମ୍ବନ୍ଧରେ କିଛି ଆଲୋଚନା କରିବା । ତାହାଙ୍କ ଧର୍ମ-ଜୀବନ ଅତି ବିଚିତ୍ର ।ସେ ମାତାଙ୍କ ଆଦେଶରେ ଦେବମନ୍ଦିରକୁ ଯାଇ ଅଛନ୍ତି; ପ୍ରତିମା ଦର୍ଶନ କରିଅଛନ୍ତି ଏବଂ ପ୍ରତିମାଙ୍କ ପ୍ରସାଦୀମାଳା ଗ୍ରହଣ କରିଅଛନ୍ତି, କିନ୍ତୁ ତାହାଙ୍କୁ କେହି କୌଣସି ଠାରେ ମସ୍ତକନତ

କରିବାର କେବେହେଁ ଦେଖିନାହାନ୍ତି । ଉପରିସ୍ଥ କର୍ମଚାରୀଙ୍କ ନିକଟରେ ମଧ୍ୟ ମସ୍ତକ ନତ ନକରି ସେ କୌଣସି କୌଣସି ବ୍ୟକ୍ତିଙ୍କ ବିରାଗ ଭାଜନ ହୋଇଥିଲେ । ସେ ଅତି ଗମ୍ଭୀରପ୍ରକୃତି, ତେଣୁ ମସ୍ତକ ନତ କରିବାର କାରଣ କେହି ତାହାଙ୍କୁ ପଚାରି ପାରି ନାହାନ୍ତି । ତାହାଙ୍କ ପିତା ଥରେ ତାହାଙ୍କୁ କଲେକ୍ଟର ସାହେବଙ୍କ ନିକଟକୁ ଚାକିରୀ ପାଇବା ଉଦ୍ଦେଶ୍ୟରେ ଘେନିଗଲେ । ପ୍ୟାରୀମୋହନ ସେଠାରେ ମସ୍ତକ ନତ ନକରି ସାହେବ ତଥା ପିତୃଦେବଙ୍କ ବିରାଗଭାଜନ ହୋଇ ଥିଲେ ।

ମୋର ପୂଜନୀୟ ପିତୃଦେବ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ସେନ୍ ତାହାଙ୍କ ଭାଗିନେୟଙ୍କ ମଧ୍ୟରେ ଅନ୍ୟତମ ଓ ପ୍ରିୟତମ । ଦିନେ ପ୍ୟାରୀବାବୁଙ୍କ ଉଦ୍ୟାନରେ ଏହି ମାମୁ ଭଣଜା ଭ୍ରମଣ କରୁ କରୁ ଭଣଜା ମାମୁଙ୍କୁ ସାହସ ସହିତ ପ୍ରଶ୍ନ କଲେ, "ମାମୁଁ, ମୁଁ ଗୋଟିଏ କଥା ଆଜି ଆପଣଙ୍କୁ ପଚାରିବି । ଆପଣ ନିଶ୍ଚୟ ସେ କଥାର ଉତ୍ତର ଦେବେ ।" ମାମୁ କହିଲେ, "ତୁ ପଚାର, ଯଦି କହିବାରେ ଆପତ୍ତି ନ ଥାଏ ମୁଁ କହିବି ।" ଭଣଜା ପ୍ରଶ୍ନ କଲେ, " ମାମୁ, ମୁଁ କୌଣସି ଠାରେ ଆପଣଙ୍କୁ ମୁଣ୍ଡ ନୁଆଁଇବାର ଦେଖି ନାହିଁ । ଏହାର କାରଣ କଣ ?" ପ୍ୟାରୀବାବୁ କାରଣ କହିବେ ନାହିଁ, ଭଣଜା ମଧ୍ୟ ଛାଡ଼ିବେ ନାହିଁ ।  ଶେଷରେ ଭଣଜା ଠାରୁ ସେହି କଥାକୁ କାହାରି ନିକଟରେ ପ୍ରକାଶ ନ କରିବାର ଅଙ୍ଗୀକାର ପାଇ ପ୍ୟାରୀବାବୁ କହିଲେ, "ଦେଖ୍ ଏହି ମସ୍ତକ ମଧ୍ୟରେ ସହସ୍ର ଦଳ ପଦ୍ମ ବିଦ୍ୟମାନ ଏବଂ ସେହି ପଦ୍ମ ଉପରେ ବ୍ରହ୍ମ ଅଧିଷ୍ଠିତ । ମୁଁ ଏ ମସ୍ତକ କାହା ନିକଟରେ ନୁଆଁଇବି ? ବ୍ରହ୍ମଠାରୁ ଏ ସଂସାରରେ ବଡ଼ କିଏ ?" ଭଣଜା ଏହି ଉତ୍ତର ଶୁଣି ନୀରବ ହେଲେ ଏବଂ ମାମୁଁ ବଞ୍ଚିଥିବା ଯାକେ ଓ ତାହାଙ୍କ ମୃତ୍ୟୁର ବହୁକାଳ ପର୍ଯ୍ୟନ୍ତ କାହାରି ନିକଟରେ ଏ ରହସ୍ୟ ଭେଦ କରି ନାହାନ୍ତି । ପରେ ପ୍ୟାରୀବାବୁଙ୍କ ବିଷୟରେ କଥାବାର୍ତ୍ତା କରୁ କରୁ ସେ ଏହି କଥାଟି ମୋ ନିକଟରେ ପ୍ରକାଶ କରିଅଛନ୍ତି ।

ସେ ହିନ୍ଦୁ ଧର୍ମରେ ବିଶ୍ୱାସୀ ଥିଲେ;  କିନ୍ତୁ ଅନ୍ୟାନ୍ୟ ଧର୍ମକୁ ଶ୍ରଦ୍ଧାର ଚକ୍ଷୁରେ ଦେଖୁଥିଲେ । ସେ ଗୋପନରେ ଓ ନୀରବରେ ଧର୍ମାଚରଣ କରୁଥିଲେ । ଧର୍ମ-ସଙ୍ଗୀତ ପ୍ରତି ତାହାଙ୍କ ପ୍ରୀତି ଥିଲା ଏବଂ ଦିନେ ଦିନେ ନିଶ୍ଚିନ୍ତ ଥିବା ସମୟରେ ସେ ଧିର ଗମ୍ଭୀର ଭାବରେ ଧର୍ମ-ସଙ୍ଗୀତ ଗାନ କରୁଥିଲେ । ଦେବ ବ୍ରାହ୍ମଣଙ୍କ ପ୍ରତି ତାହାଙ୍କ ପୂର୍ଣ୍ଣ ଭକ୍ତି ଥିଲା । ସେ ଗ୍ରାମରୁ ଫେରିବା ସମୟରେ ଶ୍ରୀ ଶ୍ରୀ ବିନୋଦ ବିହାରୀଙ୍କୁ ଦର୍ଶନ କରି ଆସନ୍ତି । ସେ ଶ୍ରୀ ଶ୍ରୀ ବିନୋଦ ବିହାରୀଙ୍କ ନିମିତ୍ତ ଗୋଟିଏ

ପକ୍‌କା ଦୋଳମଣ୍ଡପ ନିଜ ବ୍ୟୟରେ ନିର୍ମାଣ କରି ଦେଇଛନ୍ତି ।

ଉପସଂହାରରେ ଆମ୍ଭମାନଙ୍କର ଏତିକି ବକ୍ତବ୍ୟ ଯେ ପ୍ୟାରୀବାବୁ ଜଣେ କବି, ଦାର୍ଶନିକ ବା ଯୋଦ୍ଧା ନ ଥିଲେ; କିନ୍ତୁ ସେ ଚରିତ୍ର ବଳରେ ବଳୀୟାନ ଥିଲେ । ତାହାଙ୍କୁ ପବିତ୍ରତାର ମୂର୍ତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଯେଉଁଠାକୁ ଯାଉଥିଲେ, ସେଠାରେ ତାହାଙ୍କ ପବିତ୍ରତାର ପ୍ରଭାବ ସମସ୍ତେ ଅନୁଭବ କରି ପାରୁଥିଲେ । ଯେ ଥରେ ତାହାଙ୍କୁ ଦେଖିଅଛି ସେ ତାହାଙ୍କ ପ୍ରତି ଭକ୍ତିଭାବ ପୋଷଣ କରିଅଛି । ଆଜି ମଧ ତାହାଙ୍କ ସମସାମୟିକ ଯେ କାହାରିକି ତାହାଙ୍କ କଥା ପଚାରିଲେ, ସମସ୍ତେ ଏକ ବାକ୍ୟରେ କହନ୍ତି, 'ଏଭଳି ସାଧୁ ବ୍ୟକ୍ତି ଦେଖାଯାନ୍ତି ନାହିଁ । ସେ ଋଷିଙ୍କ ପରି ଜୀବନଯାପନ କରୁଥିଲେ ।' ସେ ତାହାଙ୍କର ଜନ୍ମଭୂମି ଉତ୍କଳ ପାଇଁ ଆଉ କିଛି ରଖି ଯାଇନାହାନ୍ତି ସତ୍ୟ; କିନ୍ତୁ ସେ ଯେଉଁ ଚରିତ୍ର ମୁକୁଟରେ ମଣ୍ଡିତ ହୋଇଥିଲେ, ସେହି ମହନୀୟ ଚରିତ୍ର ଗାଥା ଅଦ୍ୟାବଧି ସୁରକ୍ଷିତ । ଆଜି ଯଦି ଉତ୍କଳ ଯୁବକ ତାହାଙ୍କ ସେହି ଆଦର୍ଶ ଚରିତ୍ରରେ ପ୍ରୟାସୀ ହୁଅନ୍ତି, ଯଦି ସେହି ବ୍ରହ୍ମଚର୍ଯ୍ୟମୟ ପବିତ୍ର ଜୀବନର ଛାୟା ଉତ୍କଳ ଯୁବକମାନଙ୍କ ଉପରେ ପତିତ ହୁଏ, ତେବେ ଉତ୍କଳ-ମାତାଙ୍କ ମୁଖ ଉଜ୍ଜ୍ୱଳ ହେବ ।

କଥାରେ ଅଛି, ମଧୁରଣେ ସମାପୟେତ୍ । ଭଦ୍ରଖ ହାଇସ୍କୁଲର ଭୂତପୂର୍ବ ପ୍ରଧାନ ଶିକ୍ଷକ ଭକ୍ତିଭାଜନ କୃତବିଦ୍ୟ ସ୍ୱର୍ଗୀୟ ଶରତଚନ୍ଦ୍ର ବନ୍ଦୋପାଧାୟଙ୍କଠାରୁ ତାହାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବେ ଆମ୍ଭେମାନେ ପ୍ୟାରୀବାବୁଙ୍କ ସମ୍ବନ୍ଧରେ ଯେଉଁ ବଙ୍ଗଳା ପତ୍ର ଖଣ୍ଡିଏ ପାଇଥିଲୁଁ, ତାହାର ଅବିକଳ ଅନୁବାଦ ଏହିଠାରେ ପାଠକ ପାଠିକା ମାନଙ୍କୁ ଉପହାର ଦେଇ ବିଦାୟ ଗ୍ରହଣ କରୁଅଛୁଁ :--

ମୁଁ ଅନେକ ଦିନ ଭଦ୍ରଖ ଇଂରାଜୀ ସ୍କୁଲରେ ଶିକ୍ଷକତା କରିଥିଲି । ସ୍ୱର୍ଗୀୟ ପ୍ୟାରୀମୋହନ ସେନ୍ ମହାଶୟ କେତେକ ଦିନ ବାଲେଶ୍ୱର ଜିଲାରେ ଡେପୁଟିଇନ୍‌ସପେକ୍ଟରୀ କର୍ମ କରିଥିଲେ । ସେହି ସମୟରେ ତାହାଙ୍କ ସହିତ ସାକ୍ଷାତ କରିବା ସୌଭାଗ୍ୟ ମୋ ଭାଗ୍ୟରେ ଅନେକବାର ଘଟିଥିଲା । ତାହାଙ୍କ ପରିଚ୍ଛଦର ଆଡ଼ମ୍ବର ଆଦୌ ନ ଥିଲା । କିନ୍ତୁ ସେହି ଆଡ଼ମ୍ବର ସରଳ ପରିଚ୍ଛଦ ମଧରେ ତହାଙ୍କ ପୂର୍ଣ୍ଣ ମନୁଷ୍ୟତ୍ୱ ବିରାଜମାନ ଥିଲା । କଥାକେ କହିବାକୁ ଗଲେ, ସେ ସତ୍ୟ ନିଷ୍ଠା ଓ କର୍ତ୍ତବ୍ୟ କୁଶଳତାର ଆଦର୍ଶ ଥିଲେ । ମଫସଲକୁ ଯାଇ ଅଳ୍ପ ବେତନଭୋଗୀ ଶିକ୍ଷକମାନଙ୍କ ଉପରେ ପଡ଼ି ଭୋଜନ ବ୍ୟାପାର କରିବାର ଅଭ୍ୟାସ ତାହାଙ୍କ

ଏକାବେଳେକେ ନଥିଲା । ସମୟ ବିଶେଷରେ ଶିକ୍ଷକମାନଙ୍କ ପରିଚର୍ଯ୍ୟା ଗ୍ରହଣ କରିବାକୁ ବାଧ୍ୟ ହେଲେ, ସେ ତତ୍‌କ୍ଷଣାତ୍ ସେମାନଙ୍କ ପ୍ରାପ୍ୟ ବୁଝାଇ ଦେଉଥିଲେ; କହାରି ନିକଟରେ କୌଣସି ବିଷୟରେ ଋଣୀ ହେବାକୁ ସେ ଅତ୍ୟନ୍ତ ଅନିଚ୍ଛୁକ ଥିଲେ । ଅଫିସର କାଗଜ ପତ୍ରରୁ ସାମାନ୍ୟ ଖଣ୍ଡେ ସୁଦ୍ଧା ନିଜର ପତ୍ରାଦି ଲେଖିବାରେ ବ୍ୟବହାର କରୁ ନଥିଲେ । ଗସ୍ତର ହିସାବ ଦେବା ସମୟରେ କାଳେ ଭୁଲକ୍ରମେ ଅଧିକ ନେଇଯିବେ, ସେହି ଆଶଙ୍କାରେ ୮ ମାଇଲ ଗସ୍ତ କରିଥିଲେ ମଧ୍ୟ ୬ ମାଇଲ ଲେଖାଉଥିଲେ ।

"ଯଲ୍ଲଭସେ ନିଜ କର୍ମୋପାତ୍ତଂ

ବିତ୍ତଂ ତେନ ବିନୋଦୟଚିତ୍ତଂ"

ମହାଜନଙ୍କ ଏହି ମହାବାକ୍ୟ ତାହାଙ୍କ ଜୀବନରେ ମୂଳମନ୍ତ୍ର ଥିଲା । ଚାକିରୀ କରି ଯେନତେନ ପ୍ରକାରେଣ ଅର୍ଥ ସଞ୍ଚୟ ଦ୍ୱାରା ଧନୀ ବୋଲି ଗଣ୍ୟ ହେବାର ବାସନା କଦାପି ତାଙ୍କର ନ ଥିଲା । ଶୁଣିଅଛି, ଚାକିରୀର ପୂର୍ବେ ଓ ପରେ ତାହାଙ୍କ ଅବସ୍ଥା ସମାନ ଥିଲା । ମୁଁ ତାହାଙ୍କ ସହିତ ଦେଖା ଦେବା ମାତ୍ରେକେ, କହୁଥିଲି, "ସାଧୁନାଂ ଦର୍ଶନଂ ପୂଣ୍ୟଂ"। ସେ ହସି କହୁଥିଲେ, "ସଂସାରରେ କି ସାଧୁ ହୋଇ ରହିବା ସମ୍ଭବପର ?" ତେବେ ଆପଣ ମୋତେ ଭଲପାଆନ୍ତି ବୋଲି "ସାଧୁ" କହନ୍ତି ।

ଶ୍ରୀ ଶରତଚନ୍ଦ୍ର ବନ୍ଦୋପାଧ୍ୟାୟ ।

●

# ପରିଶିଷ୍ଟ

ପାଠକ ସାଧାରଣଙ୍କ ଅବଗତି ନିମିତ୍ତ ଆମ୍ଭେମାନେ ଏଠାରେ ଓଡ଼ିଆ ଆଉ ଇଂରାଜୀ ଭାଷାରେ ଲିଖିତ ପ୍ୟାରୀବାବୁଙ୍କ ମି:ଇଂ: ସ୍କୁଲ ପରିଦର୍ଶନର ଦୁଇଟି ମନ୍ତବ୍ୟ ଲିପିବଦ୍ଧ କଲୁଁ । ଚତୁର ପାଠକ ଏଥିରୁ ତାହାଙ୍କ ଭାଷାଜ୍ଞାନ ସଙ୍ଗେ ସଙ୍ଗେ ବୁଦ୍ଧି ବିଚାର ପ୍ରଭୃତି ଅନ୍ୟାନ୍ୟ ମାନସିକ ଶକ୍ତିର କିଞ୍ଚିତ୍ ପରିଚୟ ପାଇ ପାରିବେ-

(୧)

ଆମ୍ଭେ ଦେଖୁଅଛୁଁ ଯେ ଛାତ୍ରାବାସରେ ଥିବା ଦୁଇ ଏକ ଜଣ ଛାତ୍ରଯେକି ହେଡ଼ପଣ୍ଡିତଙ୍କ କଥା ଶୁଣୁନାହାନ୍ତି,- ସେମାନଙ୍କର ନେତା ଅଟେ । ଆଉ ଏ ଛାତ୍ର କାଞ୍ଜିହାଉସର ଇଜରାଦାରର ମୋହରିର ସ୍ୱରୂପ କାର୍ଯ୍ୟ କରେ ଓ ହେଡ଼ପଣ୍ଡିତଙ୍କ ନିକଟ ନପଢୁଥିବାରୁ ଆପଣାକୁ ତାଙ୍କ ଅଧିକାରରୁ ସ୍ୱାଧୀନ ଜାଣେ । ଶିକ୍ଷକମାନଙ୍କ ମଧ୍ୟରୁ କେବଳ ହେଡ୍‌ପଣ୍ଡିତ ଛାତ୍ରାବାସରେ ଥାଇ ସେଠାରେ ଥିବା ଛାତ୍ରମାନଙ୍କର ତତ୍ତ୍ୱବଧାନ କରନ୍ତି । ଯେ ତାଙ୍କର କଥା ନଶୁଣେ ତାକୁ ଉକ୍ତ ଛାତ୍ରାବାସରେ ରଖିବାକୁ ଦେବା ଉଚିତ ନୁହେଁ । ଆଉ--ଛାତ୍ରାବାସରେ ରହିଲେ ଅନ୍ୟ ଛାତ୍ରମାନେ ଅତିଶୟ ଅବାଧ ହେବାର ସମ୍ଭବ । ଏ ହେତୁରୁ ଆମେ ହେଡ୍‌ପଣ୍ଡିତଙ୍କୁ ଆଦେଶ ଦେଉଁଅଛୁ ଯେ ସେ- ତାଙ୍କୁ ଛାତ୍ରାବାସରେ ରଖିବାକୁ ଦେବେ ନାହିଁ । ତାହାର ଇଜାହାରରେ ସେ ବେନାମି ଦରଖାସ୍ତ ନିଜେ ଲେଖିଥିବାର ସ୍ୱୀକାର କରିଥିବାରୁ ଆମ୍ଭେ ତାହା ନାମ କାଟି ଦେବା ନିମନ୍ତେ ବୋର୍ଡ଼କୁ ରିପୋର୍ଟ କଲୁ ନାହିଁ ।

ଆଉ ଆମ୍ଭେ ଆଦେଶ କରିଅଛୁଁ ଯେ ଛାତ୍ରାବାସରେ ଥିବା ଛାତ୍ରମାନଙ୍କର କେହି ଅଭିଭାବକ ଆପଣା ପିଲାକୁ ଦେଖିବାକୁ ଆସିଲେ ତାଙ୍କୁ ଦୁଇଓଳିରୁ ଅଧିକ ଛାତ୍ରାବାସରେ ରଖିବାକୁ ହେଡ୍‌ପଣ୍ଡିତ ଦେବେ ନାହିଁ ।

ଛାତ୍ରାବାସରେ ବର୍ତ୍ତମାନ ଦୁଇ ତିନିଜଣ ପିଲାରେ ଗୋଟିଏ ଗୋଟିଏ ରୋଷାଇ ହେଉଛି । ଏକ ରୋଷାଇ ହେଲେ ଆହୁରି ପିଲା ଛାତ୍ରାବାସରେ ରହି ପାରିବେ । ଏହି ରୋଷାଇ ହେବା ବିଷୟରେ ହେଡ୍‌ପଣ୍ଡିତ ଯତ୍ନଶୀଳ ହେବେ ।

ଯବର୍ତ୍ତମାନ ରାତ୍ରିରେ ସ୍କୁଲଘରେ କେହି ରହୁନାହିଁ । ଦପ୍ତରୀର ରାତ୍ରୀରେ ଶୋଇବା ଉଚିତ .। ଏ ବିଷୟ ହେଡ୍‌ପଣ୍ଡିତ ମହୋଦୟଙ୍କୁ କହିଦେବେ ।

Sd. Pearymohan Shen.<br>
Dy. Inspector of Schools.<br>
Cuttuck<br>
18.7.97

## DECEMBER 23/92

Visited the school this day and found 51 boys present out of 71 on the rolls .The avarage roll number during the last six months was 65 nearly and the avarage daily attendance 37. Councequently on one avarage 28 boys kept themselves away from this school every day.

The resualt of the examinations are tabulated below :-

The result were on the whole satisfactory. The teachers all seemed to have done their work with interest. A little more exertion on the part of the teachers, and the school become one of the best institutions of its class in the division. The school owes much for its present condition to the interest taken by the secretary Baboo-

The cash accounts have been kept in proper forms, but the acknowledgements given by the teachers do not show the dates of payment. I hope the omission will be supplied in future.

There are two lower primary scholarship holders in the school, who have not got thier scholarships since August. The Chairman of the local Board should be written to on the subject at once.

The teachers have been paid up to the end of November. Sanction of the appointment of the new Head Pandit and the Abdhan should be obtained from the District Board.

Sd.P.M.Shen
Dy. Inspector of Schools
Cuttuck

"ଡେପୋଟି ଇନିସ୍‌ପେକ୍‌ଟର ପିଆରୀସେନ
ଛାପାଖାନାଠାକୁ ଆଉ ଆସୁନାହିଁ କେନ ?
ଖଣ୍ଡେ ଚଟିବହି ଲେଖି ପଡ଼ିଲକି ଥକି,
ଏତେ ଅଳସୁଆ ହେଲେ କାମ ଚଳିବକି ?
ତୁମସରି କେହି ନାହିଁ ଖାଣ୍ଟି ଲୋକ ଜଣେ,
ମିଷ୍ଟଭାଷୀ ସଦାଶୟ ସାଧୁ ଭଦ୍ର ପଣେ ।
ଦୁଇ ଚାରିଖଣ୍ଡ ପୋଥି ଲେଖି ପକା ଭାଇ,
ଯାଅ ଯାଅ **My friend Good bye good bye"**

*ଉତ୍କଳ-ଭ୍ରମଣ*
ବ୍ୟାସକବି ଫକୀରମୋହନ ସେନାପତି



ଶିକ୍ଷାସନ୍ଧାନ

**ଶିକ୍ଷାସନ୍ଧାନ, ଭୁବନେଶ୍ୱର**
ଏନ୍.ଡ଼ି-୭, ଭି.ଆଇ.ପି ଏରିଆ, ଆଇ.ଆର୍.ସି ଭିଲେଜ